# କୌତୁକ କୁଞ୍ଜ



ପଣ୍ଡିତ ଜଗନ୍ନାଥ ରଥ

# କୌତୁକ କୁଞ୍ଜ

ଲେଖକ :

ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ

କାବ୍ୟତୀର୍ଥ, ବିଦ୍ୟାଭୂଷଣ



# କୌତୁକ କୁଞ୍ଜ

*ଲେଖକ :*
**ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ**
କାବ୍ୟତୀର୍ଥ, ବିଦ୍ୟାଭୂଷଣ

ପୁନଃ ସଂସ୍କରଣ : ୨୦୧୭

*ପ୍ରକାଶକ :*
**ଗୋପବନ୍ଧୁ ସାହିତ୍ୟ ମନ୍ଦିର**
ଗୋପବନ୍ଧୁ ଭବନ, 'ସମାଜ' ଅଫିସ୍,
ବକ୍ସିବଜାର, କଟକ-୭୫୩୦୦୧

*ପ୍ରଚ୍ଛଦ : ରାଜେଶ ନାୟକ*

*ମୁଦ୍ରାକର :*
**ଶ୍ରୀ ନିରଞ୍ଜନ ରଥ**
ସତ୍ୟବାଦୀ ପ୍ରେସ୍,
ଗୋପବନ୍ଧୁ ଭବନ,
କଟକ-୭୫୩୦୦୧

ମୂଲ୍ୟ : ୧୦୦/-

## KOUTUKA KUNJA

***Writer:***
***Pandit Sri Jagannath Rath***

*Reprint : 2017*

***Published by :***
**Gopabandhu Sahitya Mandira**
Gopabandhu Bhawan, 'Samaja' Office,
Buxibazar, Cuttack - 753001.

***Cover Design : Rajesh Nayak***

***Printer :***
**Sri Niranjan Rath**
Satyabadi Press
Gopabandhu Bhawan,
Cuttack-753001

***Price : Rs. 100/-***

# ସୂଚନା

ଆମ ଦେଶର ଲୋକେ କଥା କହୁ କହୁ ବହୁତଗୁଡ଼ିଏ କଥା ଗୋଟିଏ ଗୋଟିଏ ପ୍ରବଚନରେ ପ୍ରକାଶ କରିଥା'ନ୍ତି ଏବଂ ଅନେକ ବିଷୟ ଗୋଟିଏ ଗୋଟିଏ ଗଳ୍ପ ସାହାଯ୍ୟରେ ବିଶଦ କରିଥା'ନ୍ତି । ଏତଦ୍‌ବ୍ୟତୀତ ମନୋବିନୋଦନ ନିମନ୍ତେ ବହୁ ରହସ୍ୟପୂର୍ଣ୍ଣ କଥା ମଧ୍ୟ କହିଥାଆନ୍ତି । ସେ ଗୁଡ଼ିକ ଯେ ମନୁଷ୍ୟ ପକ୍ଷରେ ଅନେକ ସମୟରେ ଲୋଡ଼ା, ଏହା କହିବା ବାହୁଲ୍ୟ ମାତ୍ର । ଏହା ଆମ ଦେଶରେ ବିରଳ ନୁହେଁ; କିନ୍ତୁ ସେସବୁ ସମସ୍ତଙ୍କ ପକ୍ଷରେ ସୁଲଭ ନୁହେଁ । ସୁତରାଂ କେତେଗୁଡ଼ିଏ କୌତୁକ କାହାଣୀର ସମାବେଶରେ ନିର୍ମିତ ଏବଂ 'କୌତୁକ କୁଞ୍ଜ' ପୁସ୍ତକର ପ୍ରକାଶ ସମୀଚୀନ ବୋଧ ହେଲା । ବିଶ୍ୱାସ ହୁଏ – ଏହାର ପାଠକପାଠିକା ହସ, ରସ, କୌତୁକ ଲାଭ କରି କିଞ୍ଚିତ୍ ଉପକୃତ ହୋଇପାରିବେ ।

ବଡ଼ମ୍ବା ନିବାସୀ ପୁରୀ ଜିଲ୍ଲା ସ୍କୁଲ ସମୂହର ଅବସରପ୍ରାପ୍ତ ଇନ୍‌ସପେକ୍ଟର ଶ୍ରୀଯୁକ୍ତ ଲୋକନାଥ ପଟ୍ଟନାୟକ ମହାଶୟ ଓଡ଼ିଶାରେ ସୁପରିଚିତ । ତାଙ୍କ ଆଚାର ବ୍ୟବହାର ଏବଂ କଥା ବା କାର୍ଯ୍ୟରେ ଯାହାର ଥରେ ମାତ୍ର ସମ୍ପର୍କ ହୋଇପାରିଛି, ସେ ତାଙ୍କୁ ଭୁଲି ପାରିବ ନାହିଁ । ସେ ମହାଶୟ ରହସ୍ୟ ନୀତିପୂର୍ଣ୍ଣ ଢଗଢମାଳି ଏବଂ କଥାକାହାଣୀର ଏକପ୍ରକାର ଭଣ୍ଡାର । ସେଥିଯୋଗୁଁ ଆଧୁନିକ ଶିକ୍ଷିତ ସମାଜର ତାଙ୍କ ପ୍ରତି ଆଗ୍ରହ ଏବଂ ଆକର୍ଷଣ ହୋଇଥାଏ । ସୌଭାଗ୍ୟବଶତଃ ମୁଁ ସେ ମହୋଦୟଙ୍କର ସମ୍ପର୍କରେ ଆସି ତାଙ୍କଠାରୁ ଯେଉଁ କେତେକ କଥା କାହାଣୀ ଶୁଣିଥିଲି ଆଜି ତାହାରି ଯୋଗେ ଏ 'କୌତୁକ-କୁଞ୍ଜ' ଗଢ଼ିପାରିଛି । ପ୍ରକୃତରେ ଏ ପୁସ୍ତକଟି ୮୧ଟି କୌତୁକ କଥାର କୁଞ୍ଜ । ଏହା କେବଳ ବାଳକ ବାଳିକାମାନଙ୍କୁ ନୁହେଁ, ବୟସ୍କ ବ୍ୟକ୍ତିମାନଙ୍କୁ ମଧ୍ୟ ହାସ୍ୟରସରେ ବିଭୋର କରେ । ତା'ଛଡ଼ା ପ୍ରତ୍ୟେକଟି କଥାରୁ କିଛି ଶିକ୍ଷା ମଧ୍ୟ ଲାଭ କରିବାରଅଛି, ଯାହା କି ଜୀବନପଥରେ ଅତ୍ୟନ୍ତ ପ୍ରୟୋଜନୀୟ । ସୁତରାଂ ସେ ମହୋଦୟଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛି ।

ପରିଶେଷରେ 'ସମାଜ' ସମ୍ପାଦକ ସ୍ୱର୍ଗତ ପଣ୍ଡିତ ଲିଙ୍ଗରାଜ ମିଶ୍ର ଏବଂ ଓଡ଼ିଶାର ବିକାଶବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ ଏହି ପୁସ୍ତକ ପ୍ରକାଶନରେ ଆଗ୍ରହ ପ୍ରଦର୍ଶନ କରି ଗୋପବନ୍ଧୁ ସାହିତ୍ୟ ମନ୍ଦିର ପକ୍ଷରୁ ମୁଦ୍ରଣ ସୁବିଧା କରି ଦେଇଥିବାରୁ ମୁଁ ସେ ଦୁହିଁଙ୍କ ନିକଟରେ ଧନ୍ୟବାଦ ସହ କୃତଜ୍ଞତା ଜ୍ଞାପନ କରୁଅଛି ।

ଆଶା, ଜୀବନକୁ ସରସ ସୁନ୍ଦର କରିବାକୁ ଚାହୁଁଥିବା ପାଠକ ପାଠିକାମାନେ ଏହି ପୁସ୍ତକଟିର ଉପଯୋଗ କରିବେ ।

-ପ୍ରଣେତା-

# ଉପକ୍ରମଣିକା

ଗୋପବନ୍ଧୁ ସାହିତ୍ୟ ମନ୍ଦିରର ଉଚ୍ଚ କର୍ତ୍ତୃପକ୍ଷ କେତେକ ପୁରାତନ ଶିକ୍ଷଣୀୟ ଗ୍ରନ୍ଥର ପୁନଃମୁଦ୍ରଣ କରିବାକୁ ମନସ୍ଥ କରି କାର୍ଯ୍ୟ ଆରମ୍ଭ କରିଛନ୍ତି । ଏହି କ୍ରମରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରଣୀତ ୬ଖଣ୍ଡ ଛୋଟ କାବ୍ୟ ପୁସ୍ତକକୁ ଏକତ୍ର କରି 'ଗୋପବନ୍ଧୁ କବିତାବଳୀ' ନାମରେ ପ୍ରଥମେ ପ୍ରକାଶ କରାଯାଇଥିଲା । ସେହି ପୁସ୍ତକଟିର ଲୋକପ୍ରିୟତାରେ ଉଦ୍‌ବୁଦ୍ଧ ହୋଇ ୨ୟ ଗ୍ରନ୍ଥ ଭାବରେ ପୁରୀ ଜିଲାସ୍କୁଲର ଅବସରପ୍ରାପ୍ତ ହେଡପଣ୍ଡିତ ସ୍ୱର୍ଗତ ପଣ୍ଡିତ ଜଗନ୍ନାଥ ରଥଙ୍କ ୩ଟି ପୁସ୍ତକକୁ ଏକତ୍ର କରି 'ଜଗନ୍ନାଥ ସଞ୍ଚୟନ' ନାମରେ ପ୍ରକାଶ କରିଅଛନ୍ତି । ଏହି ପୁସ୍ତକଟି ୪ ଭାଗରେ ବିଭକ୍ତ, ପ୍ରତ୍ୟେକ ଭାଗରେ ଅତି ଶିକ୍ଷଣୀୟ ବିଷୟ ସବୁ ସ୍ଥାନିତ ହୋଇଅଛି । ଯାହା ପାଠ କଲେ ପାଠକେ "ପଢୁଥିବେ ଏବଂ ହସି ହସି ଗଡୁଥିବେ" । ପାଠକ ବିଶେଷ କରି ଯେଉଁମାନଙ୍କ ପାଇଁ ଏହି ପୁସ୍ତକଟି ପ୍ରକାଶ କରାଯାଇଛି, ସେହି କୁନି କୁନି ପିଲାମାନଙ୍କ ଦ୍ୱାରା ଏହା ଆଦୃତ ହେବ ବୋଲି ଆଶା । ସେହି ଶୃଙ୍ଖଳାରେ ୩ୟ ପୁସ୍ତକ ଭାବେ ଅତି ଶିକ୍ଷଣୀୟ ଓ କୌତୁକ କଥା ସୁମନରେ ଗ୍ରନ୍ଥିତ ପୁସ୍ତକ 'କୌତୁକ କୁଞ୍ଜ' ପ୍ରକାଶ କରାଯାଇଛି । ପୂର୍ବ ପୁସ୍ତକମାନଙ୍କ ପରି ଏହିଟି ମଧ୍ୟ ପାଠକ ସମାଜରେ ଆଦୃତ ହେବା ଆଶା କରାଯାଏ ।

ପ୍ରକାଶକ

୧୯।୮।୨୦୦୩

# -: ସୂଚୀ :-


| କ୍ର.ନଂ | ବିଷୟ | ପୃଷ୍ଠା |
|---|---|---|
| ୧ । | କଥା କହିଲେ | ୯ |
| ୨ । | ନାଥେ ଜାଣନ୍ତି, କି, ହାଥେ ଜାଣନ୍ତି | ୧୧ |
| ୩ । | ସାଆନ୍ତଙ୍କ ମହତ୍ତ୍ୱ | ୧୪ |
| ୪ । | ଯେ ତୁମ ଗାତର ଗୁଣ | ୧୭ |
| ୫ । | ଚାରି ବେହ୍ୟା | ୧୯ |
| ୬ । | ପଣା ହେଲାଣି | ୨୩ |
| ୭ । | ନବାବଙ୍କ ନାତି | ୨୫ |
| ୮ । | ସବୁ ଯାଉ, ମହତ ଥାଉ | ୨୮ |
| ୯ । | ଜାକି ଥା | ୨୯ |
| ୧୦ । | ଶଙ୍ଖଫୁଙ୍କା | ୩୧ |
| ୧୧ । | ପୃଥିବୀ ନାସଦାନି ପରି ଗୋଲ | ୩୨ |
| ୧୨ । | ପଣ୍ଡିତଙ୍କ ପୁରାଣ ପଢ଼ା | ୩୪ |
| ୧୩ । | ବେଳରୁ କୁଟୁତୁଣୀଘର ଝିଅ | ୩୫ |
| ୧୪ । | ଓ ସବ୍ ଭଏଁସା ଗାଣ୍ଡ୍‌ମେ ଗୟା | ୩୬ |
| ୧୫ । | ଦାରୀ ବୟସ ବୈରାଗୀରେ ଭରଣା | ୩୯ |
| ୧୬ । | ପରପୁଅ ଲାଗି ଯୋଗିଆ କାନ୍ଦେ | ୪୦ |
| ୧୭ । | ମାଂ ବିଦ୍ଧି ଯମଦୂତକଂ | ୪୩ |
| ୧୮ । | ଆଲୁଦୋଷ | ୪୬ |
| ୧୯ । | ଯବ୍, ଯାଉଁ, ତବ୍ ବାଗ୍ ନ ଯାଉଁ | ୪୯ |
| ୨୦ । | ହେ, ହେ, ମୋ ରାଣଟି, ଖଣ୍ଡେହେଲେ ପେଟିମାଛ ଖାଅ | ୫୦ |

| | | |
|---|---|---|
| ୨୧ । | ଦୁଇ ଅଳସୁଆ | ୫୩ |
| ୨୨ । | ପଣ୍ଡିଆଣି ଲୋ ମୋ କର୍ଣ୍ଣ ଗଲା | ୫୫ |
| ୨୩ । | ଯଖନ୍ ଯେମନ୍ ତଖନ୍ ତେମନ୍ | ୫୯ |
| ୨୪ । | ଆରେ ସତ ତ, ତତେ ଖାଇବାକୁ ମୋର ତ କାହିଁକି ମନ ହଉଚି | ୬୧ |
| ୨୫ । | ସନା ବୋପା ଦନା ସିଇଁ, ଠୋଲା ଠୋଲା କରି ପିଠା ପିଇ | ୬୩ |
| ୨୬ । | ଚୋରକୁ ହାତକାମୁଡ଼ା ଶିଖେଇବା | ୬୫ |
| ୨୭ । | ଭଗବାନ୍ ଭୂତତାଂ ଗତଃ | ୬୬ |
| ୨୮ । | ସାହେବଙ୍କ ଓଡ଼ିଆ ବକ୍ତୃତା | ୬୯ |
| ୨୯ । | ବେହେରାଙ୍କ ଅକଲ | ୭୧ |
| ୩୦ । | କାଜି ବିଚାର (୧) | ୭୪ |
| ୩୧ । | କାଜି ବିଚାର (୨) | ୭୬ |
| ୩୨ । | ଶ୍ରାଦ୍ଧଠଉଁ ସଞ୍ଜାଦିଆ ଟାଣ | ୭୮ |
| ୩୩ । | ଘରଜୋଇଁ ବଡ଼ ନାକରା ଜାତି | ୮୦ |
| ୩୪ । | ଦିଶୁ | ୮୨ |
| ୩୫ । | ଜୋଇଁଙ୍କ ସନ୍ଧ୍ୟା | ୮୪ |
| ୩୬ । | ତନ୍ତୀଙ୍କ କୀର୍ତ୍ତନ | ୮୬ |
| ୩୭ । | ଆଚ୍ଛା, ଆପଣଙ୍କ ସ୍ତ୍ରୀ ମତେ ଛାଡ଼ି ଆଉ କାହାକୁ ବିବାହ କରିପାରେ କି ? | ୮୮ |
| ୩୮ । | ଭାଗ ଗୋଦାମ | ୯୦ |
| ୩୯ । | ବୋହୂ ବାବାଜି | ୯୨ |
| ୪୦ । | ଚଷାର କରଣ ମର୍ଯ୍ୟାଦା | ୯୪ |
| ୪୧ । | ସ୍ୱର୍ଗ ଏଣ୍ଡୁରି | ୯୬ |

୪୨ । ଠକ ପରମାର୍ଥୀ ୧୦୦
୪୩ । ପାନ ଆଣ, ପାନ ଦେ ୧୦୫
୪୪ । କାହିଁ, ଭାର୍ଯ୍ୟା ହେବାକୁ ତ କେହି କହିଲେ ନାହିଁ ୧୦୬
୪୫ । ଖୋଦା ବଡ଼ା ସିଆନା ୧୦୮
୪୬ । ଦେଖ ହରି କରେ କି ? ୧୦୯
୪୭ । ପଣ୍ଡିତଙ୍କ ଚଣ୍ଡୀପାଠ ୧୧୨
୪୮ । ଆପଣ ତ ଆଗୁଆ କାମ କରିବାକୁ କହିଥିଲେ ୧୧୪
୪୯ । ବାବାଜିଙ୍କ ପୋଷା ବିଲେଇ ୧୧୭
୫୦ । ଶ୍ରାଦ୍ଧ କୁକ୍‌କୁରୀ ୧୧୮
୫୧ । ମୋହନବାବୁଙ୍କ କୋଳିଖିଆ ୧୧୯
୫୨ । କେଉଟଙ୍କ ନିଜ ଉପାୟ ୧୨୨
୫୩ । ମୁଁ ଜାଣେ, ଆପଣ ଦେବାନଙ୍କ ଗାଈ ନୁହନ୍ତି ୧୨୪
୫୪ । ଆମେ ତ ଇମିତି ଇମିତି ୧୨୫
୫୫ । ରଜାଙ୍କ ଘୋଡ଼ାର ଦୁଧଖିଆ ୧୨୯
୫୬ । ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ ୧୩୨
୫୭ । ଆଲୋ ମୋ ଗମ୍ୟତାଂ କ'ଣ ହୋଇଯାଉଚି ଲୋ ୧୩୫
୫୮ । ବୃଦ୍ଧାବେଶ୍ୟା ତପସ୍ୱିନୀ ୧୩୮
୫୯ । ପୁରୋହିତଙ୍କ ଆଣ୍ଠୁଲଚ୍ଛା ୧୩୯
୬୦ । ହେଣ୍ଟିଲୋ, କାଣୀ ଝିଅ ଦେଲି ଭଣ୍ଡିଲୋ ୧୪୨
୬୧ । ମୋ ପୁଅ ସୁନା ଥାଳିରେ ଖାଇବାର ମୁଁ ଦେଖିବି ୧୪୪
୬୨ । ଯେବଣ ଘରକୁ ତେବଣ ରଷି ୧୪୫
୬୩ । ବିଷ୍ଣାୟ ନମଃ ୧୪୬
୬୪ । ଚୋରି ମୋର ଅଭ୍ୟାସ ୧୪୭
୬୫ । ତ୍ରିଫଳା ବୈଦ୍ୟ ୧୪୯

୬୬। ଖଡ଼ା ବଡ଼ି ଥୋଡ଼ ୧୫୪
୬୭। ମାତରଃ ପିତରଃ କ୍ୱାଗୁ ୧୫୫
୬୮। ଛାମୁଙ୍କର ତେବେ ବିଲେଇଟିଏ
ଯୋଗାଣ ହୋଇଛି ୧୫୬
୬୯। ଦବୁ, ମାଗିବୁ ନାହିଁ ୧୫୮
୭୦। ମିଠାଇ ଖିଆ ୧୬୧
୭୧। ଆରେ, ଗାଧାକା ମେମ୍ ସାହେବ ଲାଓ ୧୬୩
୭୨। କଖାରୁ ଚୋରି ୧୬୪
୭୩। ରାମୋ ଲକ୍ଷ୍ମଣ ମବ୍ରବୀତ୍ ୧୬୬
୭୪। ତା ଧିନି ଧିନି ଧିନି ୧୬୮
୭୫। ସାତ ଚକଟା ପୋଡୁଥି ଘଣ୍ଟା ୧୭୦
୭୬। ଶାଳିନେ ବନମାଳିନେ ୧୭୧
୭୭। ମା ଡାହାଣୀ, ପୁଅ ମଦୁଆ ୧୭୨
୭୮। କାଖ ଟେକି ଟେକି ନାଚରେ ବାବା ୧୭୬
୭୯। ଖୋଦା ଏତ୍‌ନା ବଖତ୍ କ୍ୟା କରତେ ହେଁ? ୧୭୮
୮୦। ଇସିମେ ଚିଡ଼ିଆ ହେ ୧୮୨
୮୧। ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍ ୧୮୪



# କଥା କହିଲେ

ମନୁଆ ରଜାଙ୍କର ମେହେନ୍ତର । ତା'ର କାମ ପାଇଖାନା ସଫା କରିବା । ରଜାଙ୍କୁ ଚାହିଁଲା ବେଳକୁ ସେ କେତେ ତଳର ଲୋକ । ରଜା ତ କେଡ଼େ କେଡ଼େ ଲୋକଙ୍କୁ କଥା କହନ୍ତି ନାହିଁ । ମନୁଆକୁ ବା କିପରି କହିବେ ? କିନ୍ତୁ ମନୁଆ ଦେଖୁଛି, କେତେ କେତେ ଲୋକ ରଜା ପାଖକୁ ଆସୁଛନ୍ତି, କେତେ କ'ଣ କଥାବାର୍ତ୍ତା କରୁଛନ୍ତି । ଯା ଦେଖି ତା ମନ ଭାରି ଅମୁର୍ଚ୍ଛିକ । ଏ ଦଶା ଲେଉଟିବ ବୋଲି ତା ମନରେ ନଥାଏ । ଇମିତି କେତେକାଳ ଯିବାରେ ମନୁଆର ଦଶା ଲେଉଟିଲା । ଦିନେ କ'ଣ ହୋଇଛି ନା, ସେ ପାଇଖାନା ଖଟିଦେଇ ପାଇଖାନା ବାଟଟିରେ ଠିଆହୋଇ କ'ଣ ଗୋଟେ ଭାବୁଛି । ଏଥିମଧ୍ୟରେ ରଜା ପାଇଖାନା ଯିବାକୁ ପଛରୁ ଆସି ହାବୁଡ଼ିଲେଣି । ରଜାଙ୍କର ପୁଣି ଅତର୍କ୍କ ଝାଡ଼ା । ମନୁଆ ତ କ'ଣ ଗୋଟେ ଭାବୁଛି । ସେଇଥିରୁ ସେ ରଜା ଆସିବା କଥା ଜାଣିପାରିଲା ନାହିଁ । ସେଇମିତି ଖୁଣ୍ଟଟା ପରି ଠିଆ ହୋଇଥାଏ । ଏଣେ ଅତର୍କ୍କ ଝାଡ଼ା, ସେଥିରେ ପୁଣି ବାଟରେ ମନୁଆ । ଏଥିରେ ରଜାଙ୍କର ଯେତେ ରାଗ ହୋଇପାରେ । ରଜା ରାଗରେ ଗରଗର ହୋଇ କହିଲେ "କି ବେ ଶଳା । ଆମେ ବିଜେ କରୁଚୁ, କ'ଣ ଶଳାକୁ ଦିଶୁନାଇଁ ? ଆବେ ଶଳା । ବାଟରୁ ଯାଉଚୁଟିକି ? କିଏ ଅଛରେ ଶଳାକୁ ବଜେଇବଟି ।" ମନୁଆ ରଜାଙ୍କୁ ଚାହିଁ ଦେଇ ଜିଭ କାମୁଡ଼ି ଦଶହାତ ଦୂରକୁ ଡେଇଁପଡ଼ି ଲମ୍ୱ ହୋଇ ପାଁ ପଡ଼ି କହିଲା – "ମଣିମା । ମୋ ସତାବନ ପୁରୁଷରେ କେହି ଛାମୁଙ୍କ ଶ୍ରୀମୁଖରୁ ପଦେହେଲେ ଶୁଣି ନ ଥିଲା । ଆଜି ମୁଁ ଶ୍ରୀଛାମୁଁଙ୍କ କଥା ଶୁଣି ନିସ୍ତରିଗଲି, ମୋ ଜାତି ନିସ୍ତରିଗଲା । ଆହାହା, ଆଜି ମୋର କେଡ଼େ ଭାଗ୍ୟ ।" ମନୁଆ

ଏହିପରି ଗୁଡ଼ାଏ କହି କୃତାର୍ଥ ହେଉଥାଏ । ରଜା ପାଇଖାନା ଗଲେ । ତା'ପରେ ମନୁଆ ସାଇକି ଗଲା । ସେଦିନ ମନୁଆର ଆନନ୍ଦର ସୀମା ନାହିଁ । କାରଣ ଜାଣିବାକୁ ସାଇଲୋକେ ମନୁଆ ପାଖରେ ଗୁଣ୍ଡ ହେଲେ । ସମସ୍ତେ ପଚାରିଲେ – "କିରେ କଅଣ ହେଲା ?" ମନୁଆ କହିଲା – "ଆଉ ନ ହେଲା କଅଣ ? ଯାହା ସତାବନ ପୁରୁଷରେ ନ ଥିଲା, ଆଜି ତାହା ହେଲା ।" ଲୋକେ କହିଲେ – "ହଉ କଅଣ ହେଲା କହ ।" ମନୁଆ କହିଲା "କ'ଣ ହେଲାକି, ରଜା ମହାପ୍ରଭୁ କଥା କହିଲେ" 'କିରେ କି କଥା' ? ସେ କହିଲା – "ରଜା ଶୁଳେଇକି ବିଜେ ହଉଚନ୍ତି, ମୁଁ ବାଟଟାରେ ଠିଆହୋଇଚି ମୋତେ ଜଣାନାହିଁ । ରଜା ଯା ଦେଖି ରାଗିଯାଇ କହିଲେ – "କିବେ ଶଳା । ଆମେ ବିଜେ କରୁଚୁ, ଶଳାକୁ ଜଣାପଡୁ ନାହିଁ ? ଶଳା । ବାଟରୁ ଯାଉଚୁଟିକି ? ଭାଇ । ଏଇତକରେ ସବୁ ମିଳିଗଲା ନାହିଁ କି ? ଆମର ଯାଠୁଁ ବଳି ବଡ଼ କଥା କଅଣ ଅଛି ? ରଜାଙ୍କ ମୁହଁରୁ କଥା ଶୁଣିବା କଅଣ ସହଜ କଥା ? ଭାଗ୍ୟ ଥିଲେ ମିଳେ ।" ସମସ୍ତେ କହିଲେ ସତ କଥା । ସାବାସ୍ ମନୁଆ । ତୁ ଏକା ଆମ ଜାତିର ପୁଅ । ସାବାସ୍ ସାବାସ୍ କହି ସମସ୍ତେ ଘରକୁ ଗଲେ । ସେହିଦିନ ଠାରୁ ମନୁଆର ମାନ ମହତ୍ତ୍ୱ ବଢ଼ିଗଲା ।

କାହିଁକି ନା, ରଜା କଥା କହିଲେ ।



# ନାଥେ ଜାଣନ୍ତି, କି ହାଥେ ଜାଣନ୍ତି

ଗୋଟିଏ ଦେଶରେ ଜଣେ ରଜା ଥିଲେ । ସେ ରଜାଟି ବଡ଼ ନିର୍ବୁଦ୍ଧିଆ, ବଡ଼ ଓଲୁ । ଦିନେ ଚୋରି କେମିତି କରନ୍ତି ଏହା ଜାଣିବାକୁ ତାଙ୍କର ମନ ହେଲା । ଦେଖିଲେ ଯେ ଯେ ତ ଦିନ ବେଳୁଟା, ରାତି ନହେଲେ ତ ହବ ନାହିଁ । ରାତି ହେଲା, ଉଆସ ଲୋକେ ଖାଇପିଇ ଯେ ଯୁଆଡ଼େ ନିଘୋଡ଼ ନିଦରେ ଶୋଇଲେ । ରଜା ଓ ରାଣୀ ରାଣୀହଂସପୁରକୁ ପହୁଡ଼ିବାକୁ ଗଲେ । ଶୋଇଲେ ସିନା, ରଜାଙ୍କୁ ନିଦ ହଉ ନ ଥାଏ । ତାଙ୍କର ତ ଚୋରି କରିବାକୁ ମନ ଲାଗିଚି । ସେ ଖାଲି ଚାହିଁଛନ୍ତି ରାଣୀଙ୍କ ନିଦକୁ । ରାଣୀଙ୍କୁ ନିଦ ହୋଇଗଲେ ସେ କେମିତି ଖସିବେ । ଦେଖୁ ଦେଖୁ ରାଣୀଙ୍କି ନିଘୋଡ଼ ନିଦ ହୋଇଗଲା । ରାଣୀ ଶୋଇପଡ଼ିବାରୁ ରଜା କିଛି ଖୁଡ଼ଧୁଡ଼ ନ ହୋଇ ଧୀରି ଧୀରି ହୋଇ ଉଆସରୁ ପଦାକୁ ବାହାରିପଡ଼ିଲେ । ବାହାରି ପଡ଼ିଲେ ସିନା, ରଜାପୁଅ ଲୋକ, ଚୋରି କିମିତି ଜାଣନ୍ତି ନାହିଁ । ସେଥିରେ ପୁଣି କିଟିକିଟି ଅନ୍ଧାର, ମୁହଁକୁମୁହଁ ଦିଶୁନାହିଁ, ଦାଣ୍ଡରେ ଜନପ୍ରାଣୀ କେହି ନାହାନ୍ତି । ଏକାବେଳେ ସବୁ ଶୂନ୍ୟ । ଯା' ଦେଖି ଭୟ ମାଡୁଥାଏ । କ'ଣ କରିବେ, ଚୋରିରେ ତ ମନ ଲାଗିଥାଏ । ସେଇ ଅନ୍ଧାରରେ ଝୁଣ୍ଟି ଝୁଣ୍ଟି ସାତ କଚଡ଼ା ପଡ଼ି କେତେ ବାଟ ଗଲେ । ଯାଉଁ ଯାଉଁ ଭାବିଲେ – କାହା ଘରେ ପଶିବି ? ବଡ଼ଲୋକଙ୍କ ଘରେ ତ ପଶି ହେବ ନାହିଁ । ଗଡ଼ମୁଣ୍ଡରେ ଗୋଟେ ଯୋଗୀ ଘର ଥିଲା । ସେ ଘର ଖଣ୍ଡି ଟୁଙ୍ଗୀଘର । ସେ ଯୋଗୀର ସାଙ୍ଗୀ ନାଥ । ନାଥ ଦିନଭିକାରି । ରୋଜ ଯାହା ଭିକ ପାଏ, ସେଇଥିରେ ଚଳେ । ଆଉ ବାସି ଓଳିକି ଦାନା ନ ଥାଏ । ରଜା ଦରାଣ୍ଡି ଦରାଣ୍ଡି ତା'ରି ଦାଣ୍ଡ ଦୁଆରେ ପହଞ୍ଚିଲେ । ଦୁଆର ହୋଇ ଖଣ୍ଡେ ବାଉଁଶ ତାଟି । ତାଟିଟି ଖଣ୍ଡିଏ ଦଉଡ଼ିରେ ବନ୍ଧା ହୋଇଥାଏ । ରଜା ସେ ଦଉଡ଼ିଟି ଫିଟାଇ ତା ଘରେ ପଶିଲେ । ପଶିଲେ ସିନା କିଛି ଦିଶୁ ନ ଥାଏ । ଖାଲି ତା କାନ୍ଥ ବାଡ଼ ଦରାଣ୍ଡିଲେ । ଦରାଣ୍ଡୁ ଦରାଣ୍ଡୁ କାନ୍ଥ କିଳାରେ ଗୋଟେ ଲାଉତୁମ୍ବା ଝୁଲୁଚା ହୋଇଥିଲା । ସେଇଟା ହାତକୁ ବାଜିଲା । ତୁମ୍ବାଟା

ହାତିଆ ଲାଉତୁମ୍ବା । ସେଇଟା ହାତେ କି ପାଞ୍ଚପା ଲମ୍ବା । ଯୋଗୀ ସେଇ ତୁମ୍ବା ଧରି ନିତି ଭିକମାଗି ଯାଏ । ରଜା ବିଚାରିଲେ – ଯା'ରି ଭିତରେ ନିଶ୍ଚେ ଟଙ୍କାକଉଡ଼ି, ସୁନାରୁପା ଥିବ । ଯା ବିଚାରି ତା'ରି ଭିତରେ ହାତ ପୂରେଇଲେ । ହାତ ପୂରାଇବାରେ ଧଡ଼ ଖଡ଼ ଶବ୍ଦ ହେବାରୁ ଯୋଗୀର ନିଦ ଚାଉଁକିନା ଭାଙ୍ଗିଗଲା । ସେ କିଏରେ, କିଏରେ ବୋଲି ପାଟିକଲା । ରଜା ତା ପାଟିଶୁଣି ଅତର୍ଛରେ ପଳାଇବାକୁ ବାହାରିଲେ; କିନ୍ତୁ ଯାଉଛନ୍ତି କେତେକେ ? ତୁମ୍ବାରୁ ହାତ ବାହାରିଲେ ତ ଯିବେ । ସେ ହାତକୁ ଯେତେ ଭିଡୁଛନ୍ତି, ହାତ ବାହାରୁ ନାହିଁ । ହାତିଆ ଲାଉ କିନା ? ତା ମୁହଁଟା ସରୁ । ହାତ କାଢ଼ିଲା ବେଳକୁ ହାତର ସୁନା ଖଡୁଟା ଅଟକୁଚି । ବହୁତ ଭିଡ଼ାଓଟରା କରିବାରେ ଭଉଁରିଟା କେମିତି ଖସିଯିବାରୁ ଖଡୁ ପଟକ ତୁମ୍ବା ଭିତରେ ରହିଗଲା, ହାତଟା ବାହାରିପଡ଼ିଲା । ଯାହା ହେଲା ହେଲା, ଆଉ ଖଡୁ କଥା ପଚାରୁଚି କିଏ ? ଯୋଗୀ ଭୟରେ ରଜା ପ୍ରାଣଘେନି ଚମ୍ପଟ । ରଜା ଚୋରି କରି ଯାହା ପାଇଲେ ତ ପାଇଲେ, ଏବେ ରାଣୀ ନ ଜାଣିଲେ ରକ୍ଷା । ଏଇକଥା ବିଚାରି ବିଚାରି ସେଇ ଅନ୍ଧାରରେ ପଡ଼ିଉଠି ଯାଇ ତୁନି ହୋଇ ଶୋଇପଡ଼ିଲେ । ଶୋଇପଡ଼ିଲେ ସିନା, ନିଦ ହେଲାନାହିଁ । ଖାଲି ବିଚାରୁଥା'ନ୍ତି – ରାତିରେ ସିନା ରାଣୀ ଖଡୁ କଥା ଜାଣିପାରିବେ ନାହିଁ, ଦିନ ହେଲେ ତ କଥାଟା ଧରାପଡ଼ିବ । ସେଥିକି ଉପାୟ କଅଣ ? କିଛି ଠିକଣା କରିପାରିଲେ ନାହିଁ । ଇମିତି ହଉ ହଉ ରାତି ପାହିଲା । ଆଲୁଅ ହେଲା । ରଜା ରାଣୀ ଶେଯରୁ ଉଠିଲେ । ରାଣୀ ଚାହିଁଦିଅନ୍ତି ତ ରଜାଙ୍କ ଶ୍ରୀହସ୍ତରେ ଖଡୁ ନାହିଁ । ରାଣୀ ପଚାରିଲେ – 'ଆଜ୍ଞା, ଶ୍ରୀହସ୍ତରୁ ରତ୍ନଖଡୁ କୁଆଡ଼େ ଗଲା ?' ରଜା ନ ଜାଣିଲା ପରି ଚୋରଙ୍କ ପରି ଏଣିକି ତେଣିକି ଚାହିଁ କହିଲେ ତୁମେ ରଖିନାହଁ ତ ? ରାଣୀ କହିଲେ – ମୁଁ ଖଡୁ ରଖି ଛାମୁଙ୍କୁ ଟାପରା କରୁଚି ? ରଜା କହିଲେ ଆଉ କ'ଣ ହେଲା ? ଦେଖିବଟି ତୁମର ସବୁ ଅଳଙ୍କାର ଅଛି ତ ? ରାଣୀ ରଜାଙ୍କର ଏପରି କଥାଶୁଣି କହିଲେ – "ଏପରି କ'ଣ କହୁଛନ୍ତି ? ଆଜି ଗୁରୁବାର ସଂକ୍ରାନ୍ତି, ସୁନା ହଜିଲେ ଦୋଷ । ଶ୍ରୀହସ୍ତ ରତ୍ନଖଡୁ ଯାଉଚି । ଖଡୁ କଅଣ ହେଲା କହନ୍ତୁ ।" ରଜା କହିଲେ, ଆୟେ କ'ଣ ହୋଇଥିବ । ସେଇକଥା,

ସେଇକଥା, କେତେ ପଚାରୁଚ ? ରାଣୀ କହିଲେ – ଆଜ୍ଞା, ପଚାରିବି ନାହିଁ ? ସୁନା ହଜିଲେ ଦୋଷ । କଅଣ ହେଲା କହନ୍ତୁ । ନହେଲେ ପ୍ରାୟଶ୍ଚିତ୍ତ ହେରିକା କରିବା । ମୋ ରାଣ ଅଛି, ଖଡୁ କଅଣ ହେଲା କହି ଆଜ୍ଞା ହୁଅନ୍ତୁ । ରଜା ବିରକ୍ତ ହୋଇ କହିଲେ – ମୋତେ ଆଉ ବିରକ୍ତ କରନା । ଖଡୁ କଥା ନାଥେ ଜାଣନ୍ତି, କି ହାଥେ ଜାଣନ୍ତି । ରାଣୀ କିଛି ବୁଝି ନ ପାରି ଆବାକାବା ହୋଇ ପଚାରିଲେ – ଆଜ୍ଞା । ନାଥେ କଅଣ, ହାଥେ କଅଣ, ମୁଁ ତ କିଛି ବୁଝି ପାରୁନାହିଁ । ରଜା ବିରକ୍ତ ହୋଇ ପୁଣି କହିଲେ – ନ ବୁଝିଲେ ନାହିଁ, ମୋତେ ବିରକ୍ତ କରନାହିଁ । ରାଣୀ ସେତିକିରେ ତୁନି ନ ହୋଇ କଥାଟା ଜାଣିବାକୁ ବହୁତ ରାଣ ନିୟମ ପକାଇଲେ । କେଉଁ କୀର୍ତ୍ତି କଥା ଯେ ରଜା ସବୁ ଫିଟାଇ କହିଦେବେ ? ରାଣୀ ବହୁତ କୁହାବୋଲା କରିବାରେ ରଜା ବାଧ୍ୟ ହୋଇ ଚୋରି କରିବାକୁ କାହିଁକି ମନ ହେଲା, ଅନ୍ଧାର ରାତିରେ କିପରି ଗଲେ, କିପରି ଯୋଗୀଘରେ ପଶିଲେ, ଲାଉତୁମ୍ୱାରେ କାହିଁକି ହାତ ପୂରାଇଲେ, ଯୋଗୀ ପାଟି କରିବାରୁ ତୁମ୍ୱାରୁ ହାତ କାଢୁକାଢୁ ତୁମ୍ୱା ଭିତରେ ସୁନା ଖଡୁ କିପରି ଅଟକି ରହିଲା, ଏସବୁ କଥା ଭିନ୍ନ ଭିନ୍ନ କରି ବୁଝାଇ କହିଲେ । ରାଣୀ ଆଉ କଅଣ କହିବେ ? ମନେ ମନେ ଗୁଡ଼େ ହାରାମ ହେଲେ । ସୁନା ହାତରୁ ଯିବାରୁ ଗୁଡ଼ାଏ ବ୍ୟସ୍ତ ହେଲେ । ଦୋଷ କଟାଇବାକୁ ବହୁତ ଦାନପୁଣ୍ୟ କଲେ ।

ଚୋରି କରି ରଜା ଯାହା ପାଇଲେ ତ ପାଇଲେ । ସେଇକାଳୁ କଥା ରହିଲା – ନାଥେ ଜାଣନ୍ତି, କି ହାଥେ ଜାଣନ୍ତି ।

ଯେ ଅସତ୍ ଉପାୟ କରି କ୍ଷତିରେ ପଡ଼ି ଧରାପଡ଼େ, ତାକୁ ପଚାରିଲେ ସେ ଲାଜରେ ସବୁକଥା କହି ନ ପାରି କହେ – ନାଥେ ଜାଣନ୍ତି, କି ହାଥେ ଜାଣନ୍ତି । ଆଉ ମତେ କିଛି ପଚାରନା ।



# ସାଆନ୍ତଙ୍କ ମହତ୍ତ୍ୱ

ରଜାଙ୍କ କୁଟୁମ୍ବଭାଇକି ସାଆନ୍ତ କହନ୍ତି । ସାଆନ୍ତମାନେ ରଜାଘର ଭଳି ବିଧି ବେଭାର, ମହତ୍ତ୍ୱ ମର୍ଯ୍ୟାଦା କରନ୍ତି । ତା' କଲେ ସେମାନଙ୍କୁ ସୁନ୍ଦର, ନ କଲେ ଅସୁନ୍ଦର । କୁଟୁମ୍ବରୁ ଉଣା ଜ୍ଞାତିମାନଙ୍କୁ ଭାଇପୁଅ କହନ୍ତି । ଏମାନେ ମଧ୍ୟ ରଜାଘର ଢଙ୍ଗଧରଣ ଦେଖେଇ ହୁଅନ୍ତି । ଥୋକେ ପୋଇଲି ଆଡ଼ର ପୁଅ ଥାଆନ୍ତି । ସେମାନେ ସାଆନ୍ତ ନୁହନ୍ତି, କି ଭାଇପୁଅ ନୁହନ୍ତି । ସେମାନଙ୍କୁ ଅନ୍ତର କହନ୍ତି । ସେ ଅନ୍ତରରୁ ପୋଇଲିପୁଅ ହୋଇ ପ୍ରତ୍ୟନ୍ତର ହୁଅନ୍ତି । ଏହିପରି ସାତ ଅନ୍ତର ହେଲେ ମଧ୍ୟ ଯାହାଠାରେ ରଜାଘର ଆଞ୍ଚ ଲାଗିଥାଏ, ସେ ନିଜକୁ ସାଆନ୍ତ ବୋଲାଇବାକୁ ରଜାଘର ଢଙ୍ଗଧରଣ ଚାଲିଚଳଣ, ଡକାହକା ନିଜ ଘରେ ଚଳାଇଥାଏ; କିନ୍ତୁ ସାଆନ୍ତ ବା ଭାଇପୁଅ ପରି ସମସ୍ତଙ୍କର ରଜାଘର ଖଞ୍ଜା ବାଡ଼ି ନ ଥାଏ । ସେହି ହେତୁରୁ ସେମାନଙ୍କ ଅବସ୍ଥା ଖରାପ । କେବଳ ରଜାଘର ପରି ଯିବାକୁ ବିଜେ କରିବା, ଖାଇବାକୁ ମୁଣୋହି କରିବା, ଦାନ୍ତଘଷାକୁ କାଠିଲାଗି ହେବା, ଝାଡ଼ା ଯିବାକୁ ଶୁଳେଇକି ବିଜେ କରିବା, ଶୋଇବାକୁ ପହଡ଼ କରିବା ଏହିପରି ଗୁଡ଼ିଏ ରଜାଘରିଆ କଥା ବ୍ୟବହାର କରନ୍ତି ।

ଗୋଟିଏ ଗାଁ'ରେ ଜଣେ ପ୍ରତ୍ୟନ୍ତର ସାଆନ୍ତ ଥିଲେ । ତାଙ୍କ ଘରେ ସାତ ଆଠଜଣ କୁଟୁମ୍ବ । ତା'ଛଡ଼ା ରଜାଘରିଆ ମହତ୍ତ୍ୱ ରଖିବାକୁ ପୋଇଲିଟିଏ ରଖିଥା'ନ୍ତି । ତା ନାଁ ମରୁଆ । ଏଥିକି ଜମିବାଡ଼ି, ଟଙ୍କା

କଉଡ଼ି, କିଛି ନ ଥାଏ । ଦିନେ ଦିନେ ଦାନା ଅଭାବରୁ ଖନ୍ଦା ମଧ୍ୟ ହୋଇପାରେ ନାହିଁ । ସବୁବେଳେ ଋଣ କରଜ କରିବାକୁ ପଡ଼େ ।

ସେ ଗାଁ'ରେ ରଜାଙ୍କର ଗୋଟେ ବଡ଼ ଖମାର ଥାଏ । ଜ୍ୟେଷ୍ଠ, ଆଷାଢ଼ ମାସରେ ସେଥିରୁ କେତେ ଧାନ ବିକାଯାଏ, କେତେ ଧାନ କରଜ ଲାଗେ । ଆମଦାନୀ ବେଳେ ସବୁ ବର୍ଷ କରଜ ଧାନ ଅସୁଲ ହୁଏ । ଧାନ ହିସାବକୁ ଜଣେ ବେବର୍ତ୍ତା ଥାଆନ୍ତି ।

କରଜ ଫିଟିଲା ବେଳକୁ ସମସ୍ତେ କରଜ ନିଅନ୍ତି । ଭାଇପୁଅଙ୍କର ତ ସବୁଦିନେ ନିଅଣ୍ଟିଆ । ସେ ମଧ୍ୟ କରଜ ନିଅନ୍ତି; ମାତ୍ର ଦେଲାବେଳକୁ ବୁହେ ଘୋଷରା ଓଟରା ହୋଇ ବେମହତ୍ତ୍ୱ ହୁଅନ୍ତି ।

ବର୍ଷେ, ଧାନ ଅମଳ ବେଳେ ଧାନ ଅସୁଲ ହେଉଚି । ବେବର୍ତ୍ତା ଜଣ ଜଣ କରି ତଲବ କରୁଛନ୍ତି । କିଏ ଅବା ପୂରା ଅସୁଲ ଦେଇଯାଉଚି, କିଏ ଅବା ଗାଈ ବଳଦ ବିକି ଧାନ ଭରଣାକୁ ଟଙ୍କା ଦେଇଯାଉଚି, କିଏ ଅଧାଅଧି ପୈଠଦେଇ ବାକିତକ ପାଇଁ କୁହାପୋଛା କରି କିଛି ଦିନକୁ ଛାଡ଼ ନଉଚି । ସବୁ ଖାତକ ନିଜ ନିଜ ଅଡୁଆ ଏହିପରି ତୁଟାଇ ଦେଇ ଯାଉଛନ୍ତି; ମାତ୍ର ଭାଇପୁଅ ସାଆନ୍ତ କିଛି ହେଲେ ପୈଠ ଦେଲେନାହିଁ କି ହାଜର ସୁଦ୍ଧା ହେଲେନାହିଁ; ଓଲଟି ପିଆଦାକୁ ତେରିମେରି ଦେଖେଇଲେ ।

ପିଆଦା ଭାଇପୁଅସାଆନ୍ତଙ୍କ ତମ୍ବୁତୋଫାନ ସବୁ ବେବର୍ତ୍ତାଙ୍କ ପାଖରେ ବୟାନ କରିବାରୁ ବେବର୍ତ୍ତା ରାଗିମାଗି ପିଆଦାକୁ ହୁକୁମ ଦେଲେ – ସେ ସେଥିରେ ଫଳିବ ନାହିଁ, ଚୁଟିଧରି ଟେକିଆଣ । ପିଆଦା ବେବର୍ତ୍ତାଙ୍କର କଡ଼ା ହୁକୁମରେ ସାଆନ୍ତଙ୍କ ଘରେ ପହଞ୍ଚିଲା ବେଳକୁ ସାଆନ୍ତେ ଦିହପାଣିକି ବିଜେହବାକୁ ମର୍ଦ୍ଦନ ବଢ଼ାଉଥା'ନ୍ତି । ମର୍ଦ୍ଦନ ଆଉ କିଛି ନୁହେଁ, ଟିକିଏ ଖାଣ୍ଟି କଡ଼ାତେଲ ଶ୍ରୀଅଙ୍ଗରେ ଲଗାଉଥିଲେ । ପିଆଦା ତାଙ୍କୁ ଯିମିତି ଦେଖିଛି, ସେଇମିତି ଆଗ ତେରିମେରି ଆରମ୍ଭ କଲା । ସାଆନ୍ତ କି ଡରିଯିବା ପୁଅ ? ସେ ମଧ୍ୟ ଗୁଡ଼େ ଗାଲ୍‌ମାଲୁ କଲେ । ପିଆଦା ତ କଡ଼ା ହୁକୁମ ପାଇଛି, ସାଆନ୍ତଙ୍କୁ ମଧ୍ୟ ଚିହ୍ନିଚି, ସେ କିଆଁ ଟିକିଏ ଡରିବ ? ସାଙ୍ଗେ ସାଙ୍ଗେ ସାଆନ୍ତଙ୍କ ଚୁଟିଧରି ଘୋଷାରିଲା ।

ସାଆନ୍ତଙ୍କ ପୋଇଲୀ ମରୁଆ ସାଆନ୍ତଙ୍କ ପାଟିତୁଣ୍ଡ ଶୁଣି ଦୌଡ଼ିଆସି ଦେଖେ ତ ସାଆନ୍ତ ଚୁଟିଧରାରେ ଘୋଷରା ହୋଇଯାଉଛନ୍ତି । ଯା ଦେଖି ସେ ଅତର୍ଚ୍ଛରେ ଡାକ ପକାଇଲା – ଆଗୋ ଦେଖ ଗୋ ! ଦେଖ ଗୋ !

ସାଆନ୍ତାଣୀ ଚୌରୀ ଭିତରେ ମରୁଆର ଅତର୍ଚ୍ଛ ଡାକ ଶୁଣି କହିଲେ – କିଲୋ ! କ'ଣ ହେଲା ଲୋ ମରୁଆ ?

ମରୁଆ କହିଲା – ମଣିମା, ମଣିମା, ଧାଇଁ ବିଜେକର, ଧାଇଁ ବିଜେକର । ଦେଖି ଆଜ୍ଞା ହୁଅନ୍ତୁ – ଯେ ବାହାରଗଡ଼ିଆ, ମୁଣ୍ଡୁକଟା, ମଲାମୁଣ୍ଡିଆ, ନିମୁଣ୍ଡିର କେଡ଼େ ବଢ଼େଇ । ସାଆନ୍ତଙ୍କ ଗଭାଧରି ନଉଛି ଯେ ପା ଭୂଇଁରେ ଲାଗୁନାହିଁ, କି ଅଧରରୁ କଥା ବାହାରୁନାହିଁ ।

ସାଆନ୍ତାଣୀ ଶୁଣିଲେ ସିନା, କଅଣ କରିବେ ? ଖାଲି ମୁଣ୍ଡକୋଡ଼ି ହେଲେ । ବାକି ଦାଣ୍ଡରେ ଯେ ଶୁଣିଲେ, ଦେଖିଲେ, ସେସବୁ କହିଲେ – ସତତ, ସାଆନ୍ତଙ୍କ ପା ତ ଭୂଇଁରେ ଲାଗୁନାହିଁ, ଅଧର ତ ଫିଟୁନାହିଁ । ଆହା, ଶ୍ରୀଅଙ୍ଗକୁ କେଡ଼େ ବାଧା ହେଉଥିବ ?

ଏଇ କଅଣ ସାଆନ୍ତଙ୍କ ମହତ୍ତ୍ୱ ?



# ଯେ ତୁମ ଗାତର ଗୁଣ

ଗୋଟେ ଆମ୍ବତୋଟାରେ ଖଣ୍ଡେ ପାଣିଚବକା ଥାଏ । ସେଥିରେ ଖରାଦିନରେ ମଧ୍ୟ ବଳାଗଣ୍ଠିଏ ପାଣି ରହେ । ସେଥିରେ କଉ, ମାଗୁର, ରଟା, ଗଡ଼ିଶା, ତୋଡ଼ି ହୋଇ ମାଛଗୁଡ଼ିଏ ମଧ୍ୟ ରହନ୍ତି । ଏସବୁ ମାଛ ତ ପଙ୍କୁଆ ମାଛ; ତେଣୁ ବିବର କରି ରହନ୍ତି । କେହି ଜଣେ ମାଛୁଆ ଏସବୁ ମାଛ ଥିବାର ଉଣ୍ଡି ଦିନେ ମାଛ ଧରିବାକୁ ଗଲା । ବିବରରେ ହାତ ନ ପୂରାଇଲେ ତ ମାଛ ଧରା ପଡ଼ିବେ ନାହିଁ; ତେଣୁ ସେ ବିବର ଉଣ୍ଡି ହାତ ପୂରେଇ ମାଛ ଧରିଲା । କେଉଁଠୁ ତୋଡ଼ି, କେଉଁଠୁ କଉ, କେଉଁଠୁ ଗଡ଼ିଶା, ଏହିପରି ଯେଉଁଠୁ ଯାହାପାଏ, ତାକୁ ଧରି ଅଣ୍ଟିରେ ପୂରାଏ । ଗୋଟେ ଗୋଟେ ବିବରରେ ଧଣ୍ଡ ମଧ୍ୟ ଥାଆନ୍ତି । ହାତ ପୂରେଇ ମାଛ ବୋଲି ଧରିଆଣି ଯେତେବେଳେ ଦେଖେ ଧଣ୍ଡଟେ, ସେତେବେଳେ ସେ ଉଲୋ ବୋଲି ପାଟି କରି ଛାଟି ଫିଙ୍ଗି ଦେବାରେ ଧଣ୍ଡୁଟାମାନ ପାଏ ପାଏ ଦୂରରେ ପିଟି ହୋଇପଡ଼ନ୍ତି । ଧଣ୍ଡ ବୋଲି ସମ୍ଭଳା ହେଲା, ନ ହେଲେ ମାଛୁଆର ମାଛଖିଆ ସୁଆଦ ବାହାରି ପଡ଼ିଥା'ନ୍ତା । ଇମିତି କେତେ ଧଣ୍ଡ ଧରି ଫିଙ୍ଗିଲା । ମାଛ ତକ ଧରି ଘରକୁ ଗଲା ।

ସେ ଚବକା ପାଖରେ ଗୋଟେ ଖାତ ଥିଲା । ସେଥିରେ ଗୋଟେ ପୁରୁଣା ତମ୍ପ ଥିଲା । ସେ ଧଣ୍ଡମାନଙ୍କର ଏ ଦୁର୍ଦ୍ଦଶା ଦେଖି ଗୋଟିଏ ଧଣ୍ଡକୁ କହିଲା – ତୁମେ ସେମିତି ସାପ ବୋଲି ତୁମର ଇମିତି ଅବସ୍ଥା ନ ହୋଇ ଆଉ କଅଣ ହୁଅନ୍ତା ? ଆମେ ହୋଇଥିଲେ ଦେଖିଥା'ନ୍ତ – କଅଣ ହୋଇଥା'ନ୍ତା । ସେ ପୁଣି ଆମକୁ ଫିଙ୍ଗିବାଯାଏ ଯାଇଥା'ନ୍ତା ?

ଧଣ୍ଡ କହିଲା – ଆମେ କଅଣ କରିବୁ ? ଆମ ମୁଣ୍ଡଟିମାନ ତ ସରୁ, ଧରି ପକାଇଲେ ତ କାବୁ, କିଛି ନାହିଁ । ନ ହେଲେ କଅଣ ଆମ କଥା ଆମେ କରି ନ ଥା'ନ୍ତୁ ?

ଏହା ଶୁଣି ତମ୍ପ କହିଲା – ଆଚ୍ଛା, କାଲିକି ତୁମେ ଆମ ଗାତରେ ରହ, ଆମେ ତୁମ ଗାତରେ ରହିବା । ଦେଖିବ ଆମେ କଅଣ କରିବୁ । ଧଣ୍ଡ ସେଥିରେ ରାଜିହବାରୁ ତମ୍ପ ଧଣ୍ଡଗାତରେ ରହିଲା ।

ମାଛୁଆର ତ ମନ ଲାଗିଛି । ତହିଁଆରଦିନ ମଧ୍ୟ ସେ ଚବକାକୁ ମାଛମାରି ଗଲା । ସେହିପରି ହାତପୂରେଇ ମାଛ ଧରିଲା । ମାଛ ଧରୁ ଧରୁ ତମ୍ପଥିବା ଗାତରେ ହାତ ପୂରେଇଲା । ଧଣ୍ଡପରି ତମ୍ପମୁଣ୍ଡ ମଧ୍ୟ ତା ହାତରେ ପଡ଼ିଲା । ଯେତେ ବଡ଼ ସାପ ହଉ, ମୁଣ୍ଡଟା ହାତ ମୁଠାରେ ରହିଲେ ସେତିକିରେ ସାପପଣିଆ ଶେଷ । ମୁଣ୍ଡଟି ହାତମୁଠାରେ ରହିବାରୁ ତମ୍ପ ଆଉ କିଛି କରି ନ ପାରନ୍ତି ।

ମାଛୁଆ ଗାତ ଭିତରୁ ହାତ ଭିଡ଼ିଆଣି ଦେଖେ ତ ତମ୍ପଟେ । ଯେମିତି ତମ୍ପୁଟେ ବୋଲି ଜାଣିଚି, ସେମିତି ଦେଲା ଛାଟି ଯେ ତମ୍ପଟା ଶହେ କି ଦି ଶହ ହାତ ଦୂରରେ ପଡ଼ି ଅଧାପ୍ରାଣ ।

ମାଛୁଆ ତ ମାଛ ଘେନି ଘରକୁ ଗଲା । ଧଣ୍ଡ ତମ୍ପର ଏ ଦଶା ଦେଖି କହିଲା – କିଓ ଭାଇ । ତୁମର କଅଣ ଆମରି ପରି ଦଶା ହେଲା ? କେତେ ପ୍ରତିଜ୍ଞା କରୁଥିଲ । ଅଧିକୁଟେ କଅଣ କରି ପକାଇଲ ?

ଧଣ୍ଡ କଥାରେ ଲାଜରେ ତମ୍ପ ମୁହଁ ଜଳିଗଲା । ଆଉ କହିବ କଅଣ ? କହିଲା – ଭାଇ । ମୁଁ ଆଉ କହିବି କଅଣ ? ଯେ ତମ ଗାତର ଗୁଣ ।

ଧଣ୍ଡ କହିଲା – ହଉ, ହଉ ପାରିବାରପଣିଆ ତ ଜଣାଗଲା । ଏବେ ତୁମ ଗାତକୁ ତମେ ଆସ ।

ତମ୍ପ କହିଲା ଭାଇ । ମୁଁ ତ ସେୟା କହିଥା'ନ୍ତି ।

କଥାରେ କ'ଣ ମହତ୍ତ୍ୱ ରହେ ?



# ଚାରି ବେହ୍ୟା

ଗୋଟେ ଦେଶରେ ଜଣେ ରଜା ଥିଲେ । ରଜାଟି ମହାମୂର୍ଖ । ପାଠର ନାଁ ସୁଦ୍ଧା ଧରନ୍ତି ନାହିଁ । ଖାଲି ବସି ବସି ଦିନ କଟାନ୍ତି । ଯେତେବେଳେ ଯାହା ଖିଆଲ ହୁଏ ସେୟା କରନ୍ତି ।

ତାଙ୍କର ଜଣେ ବୁଦ୍ଧିଆ ମନ୍ତ୍ରୀ ଥିଲେ । ଦିନେ ମନ୍ତ୍ରୀ ରଜାଙ୍କୁ ମଜୁରା କଲାବେଳକୁ ରଜାଙ୍କର କଅଣ ଗୋଟେ ଖିଆଲ ହେଲା । ସେ କହିଲେ – ମନ୍ତ୍ରୀ । କାଲିକି ଆମର ଚାରିଜଣ ବେହ୍ୟା ଦରକାର । ନ ଆଣିପାରିଲେ ତୁମର ମନ୍ତ୍ରୀପଦ ଯିବ, ଆମକୁ ଆଉ ଦୋଷ ଦେବନାହିଁ ।

ମନ୍ତ୍ରୀ ବୁଦ୍ଧିମାନ । ସେ ରଜାଙ୍କର ଏ ଅଡୁଆ ହୁକୁମ ଶୁଣି କାବା ହୋଇଗଲେ; କିନ୍ତୁ ହୁକୁମ ତ ପାଳିବାକୁ ହେବ, ନ ହେଲେ ତ ଚାକିରି ଯିବ । ଏହା ଭାବି ସେ ଆଉ କିଛି ନ କହି କହିଲେ – ଆଜ୍ଞା, ହୁକୁମ ଶିରୋଧାର୍ଯ୍ୟ । ଯାହା ପାରିବି ତାହା ଅବଶ୍ୟ କରିବି କହି ଘରକୁ ଗଲେ ।

ମନ୍ତ୍ରୀଙ୍କର ଆଉ ଖିଆପିଆରେ ମନ ନାହିଁ । କାଲିକି ଚାରିଟା ବେହ୍ୟା କିମିତି ରଜାଙ୍କୁ ଦେବେ ଖାଲି ଏଇ ଚିନ୍ତାରେ ବ୍ୟସ୍ତ ହେଲେ ।

ରାତି ପାହିଲା । ସକାଳେ ମନ୍ତ୍ରୀ ବେହ୍ୟା ଖୋଜି ବାହାରିଲେ । ତାଙ୍କ ଭାଗ୍ୟ ଭଲ ଖଣ୍ଡେଦୂର ଯାଇଛନ୍ତି, ଦେଖିଲେ ଜଣେ ଲୋକ ଘାସଗୋଛାଟିଏ ମୁଣ୍ଡରେ ମୁଣ୍ଡାଇ ଗୋଟିଏ ଘୋଡ଼ାରେ ବସିଯାଉଚି । ମନ୍ତ୍ରୀ ତାକୁ ପଚାରିଲେ – କିଓ ଏ କଅଣ ? ଘାସଗୋଛାଟି ମୁଣ୍ଡେଇଚ କାହିଁକି, ଘୋଡ଼ା ପିଠିରେ ଥୋଇଦେଉନାହଁ ?

ମନ୍ତ୍ରୀ ଦେଖିଲେ ଯେ, ଏଇଟାର ବୁଦ୍ଧିଶୁଦ୍ଧି କିଛି ନାହିଁ ? ଘାସଗୋଛାଟା ମୁଣ୍ଡେଇ କରି ବସିଲେ ପୁଣି ଘୋଡ଼ାର ଭାର କମିଯିବ । ବାଃ ଭଲ ବୁଦ୍ଧିଆ । ପୁଣି ଘୋଡ଼ାରେ ବସି ଘାସ ଗୋଛାଟିଏ ମୁଣ୍ଡେଇଚି ।

ଯାଠଉଁ ବଳି ବେହ୍ୟାଗିରି କଅଣ ଅଛି ? ଯା'କୁ ରଜାଙ୍କ ପାଖକୁ ନେଇଗଲେ ଗୋଟିଏ ବେହ୍ୟାରୁ ଖଲାସ ମିଳିବ । ମନ୍ତ୍ରୀ ତାକୁ କହିଲେ – ତୁମରି ଭଳିଆ ଜଣେ ଲୋକ ରଜାଙ୍କର ଦରକାର । ତୁମେ ମୋ ସଙ୍ଗେ ଟିକିଏ ରଜାଙ୍କ ପାଖକୁ ଆସ । ବିଚରା ମନ୍ତ୍ରୀଙ୍କ ହୁକୁମରେ ସେହିପରି ଘାସଗୋଛା ମୁଣ୍ଡାଇ ଘୋଡ଼ାରେ ବସି ବାହାରିଲା ।

ମନ୍ତ୍ରୀ ଯାଉ ଯାଉ ବାଟରେ ଆଉ ତିନୋଟି ବେହ୍ୟା ପାଇଁ ଏଣେତେଣେ ଚାହୁଁଥା'ନ୍ତି । ଦେଖୁ ଦେଖୁ ଭାଗ୍ୟକୁ ଜଣେ କଞ୍ଚା ବେହ୍ୟା ହାବୁଡ଼େ ପଡ଼ିଗଲା ।

ସେ ଲୋକ କରିଚି କଅଣ ନା – ଗୁଡ଼ିଏ ବାଇଗଣ, ଗୁଡ଼ିଏ ହଳଦୀ ଯାଉଁଳି କରି କାନ୍ଧରେ ରଖି ତେଲ ଘଡ଼ିଟିଏ ହାତରେ ଧରି ଏକମୁହାଁ ହୋଇ ଭିଡ଼ିଚି । ତାକୁ ଦେଖି ମନ୍ତ୍ରୀ ପଚାରିଲେ – କିଓ ତମେ ଇମିତି ଲସର ପସର ହୋଇ କୁଆଡ଼େ ଧାଇଁଚ ?

ସେ କହିଲା – କ'ଣ କି ଆଜ୍ଞା, ମୋ ଭାର୍ଯ୍ୟାକୁ ଜଣେ ଲୋକ ସହ୍ଲାସୂତ୍ର କରି ନେଇ ତା ଘରେ ରଖିଲା । ମୁଁ ଯେତେ ଯୋଗାଡ଼ ଯତ୍ନ କଲା, ସେ ଆଉ ମୋ ପାଖକୁ ଫେରିଲା ନାହିଁ । ସେ ଏବେ ତା'ରି ଘରେ ଅଛି । ଏବେ ପୁଣି ତାରିଆଡୁ ପୁଅଟିଏ ହୋଇଚି । ଏସବୁ ତ ଆଖି ଆଗେର ଦେଖୁଚି, ସମ୍ଭାଳି ହେବି କେତେକେ ? ମନ ଥୟ ନ ହେବାରୁ ତା'ରି ପଥି ପାଇଁ ବାଇଗଣ ଦି'ଟା, ପିଲାଟି ପାଇଁ ତେଲ ହଳଦୀ ଟିକିଏ ନେଇ କରି ଯାଉଛି । ତା'ର ପଥିବେଳ ହୋଇଗଲାଣି, ସେଥିପାଇଁ ଦଉଡୁଚି ।

ମନ୍ତ୍ରୀ ଦେଖିଲେ ଯେ, ଯେ ଗୋଟିଏ କଞ୍ଚାବେହ୍ୟା । ଯାକୁ ଦେଖିଲେ ରଜା ଥଣ୍ଡା ହୋଇଯିବେ । ତାକୁ କହିଲେ – ବୁଝିଲ । ତୁମ କଥା ସବୁ ଶୁଣିଲି । ତୁମକୁ ଆଗ ରଜାଙ୍କ ପାଖକୁ ଯିବାକୁ ହେବ । ଦରକାର ଅଛି । ରଜାଙ୍କ ସଙ୍ଗେ ଦେଖା ହୋଇସାରିଲେ ଭାର୍ଯ୍ୟା ଏବଂ ପୁଅ କଥା ବୁଝିବ । ବିଚରା ବାଧ ହୋଇ ସେଇ ସଜରେ ମନ୍ତ୍ରୀଙ୍କ ସାଙ୍ଗେ ସାଙ୍ଗେ ରଜାଙ୍କ ପାଖକୁ ବାହାରିଲା ।

ମନ୍ତ୍ରୀ ଆଉ ବେହ୍ୟା ନ ପାଇ ସେଇ ଦୁଇଜଣ ବେହ୍ୟାଙ୍କୁ ନେଇ ରଜାଙ୍କ ପାଖରେ ହାଜର ହେଲେ । ରଜା ପଚାରିଲେ – କିଓ ମନ୍ତ୍ରୀ । ବେହ୍ୟା କାହାନ୍ତି ? ମନ୍ତ୍ରୀ ଘୋଡ଼ାରେ ବସିଥବା ଲୋକଙ୍କୁ ଦେଖେଇ ଦେଇ କହିଲେ – ଆଜ୍ଞା । ଯେ ଗୋଟିଏ ବେହ୍ୟା ।

ରଜା କହିଲେ – ସେ ବେହ୍ୟା ବୋଲି କିମିତି ଜାଣିଲ ?

ମନ୍ତ୍ରୀ କହିଲେ – ଆଜ୍ଞା । ଘାସଗୋଛା ମୁଣ୍ଡେଇ କେହି ଘୋଡ଼ାରେ ବସି ଯାଏ ? ପଚାରିବାରୁ କହୁଚି କଅଣ ନା – ଘୋଡ଼ାରେ ବସିବା; ତା' ଉପରେ ପୁଣି ଘାସ ଲଦିବା – ଏଥିରେ ଅଧର୍ମ ହେବ ନାହିଁ ? ବୁଦ୍ଧି ଏମିତି, ବେଭାର ତ ଦେଖୁଚନ୍ତି । ଆଉ ବେହ୍ୟା କିମିତି ବୋଲି ପଚାରୁଚନ୍ତି ।

ରଜା କହିଲେ ହଉ, ଗୋଟିଏ ବେହ୍ୟା ହେଲା, ଆଉ କାହାନ୍ତି ?

ମନ୍ତ୍ରୀ କହିଲେ ଆଜ୍ଞା । ଏ ଯେଉଁ ଲୋକଟି ଯାଉଁଳି ପକାଇ ତେଲଘଡ଼ି ଧରିଛି, ତାକୁ ପଚାରନ୍ତୁ ସେ କଅଣ ନେଉଚି ?

ରଜା ପଚାରିବାରୁ ସେ ଲୋକ ମନ୍ତ୍ରୀଙ୍କୁ ଯାହା କହିଥିଲା ରଜାଙ୍କୁ ସେୟା କହିଲା । ରଜା ଶୁଣି ଠୋ ଠୋ ହୋଇ ହସିଲେ । କହିଲେ – ସାବାସ୍ ମନ୍ତ୍ରୀ । ଅସଲ ବେହ୍ୟା ଆଣିଚ । ଯେ ତ ଦୁଇ ଗଲେ ବାକି ଦୁଇ ?

ମନ୍ତ୍ରୀ କହିଲେ – ଆଜ୍ଞା, ଛାମୁ ଜଣେ ବେହ୍ୟା ।

ରଜା କହିଲେ – କିଓ । ଆମେ କେମିତି ବେହ୍ୟା ହେଲୁ ?

ମନ୍ତ୍ରୀ କହିଲେ ଛାମୁ ବେହ୍ୟା ନୁହନ୍ତି ? ଛାମୁ ତ ଅସଲ ବେହ୍ୟା । ଛାମୁ ରଜା ହୋଇ ରାଜକାର୍ଯ୍ୟ ବୁଝନ୍ତେ କ'ଣ ତାହା ନ କରି, ପାଠ ଶାଠ ଚର୍ଚ୍ଚା ନ କରି ମନ୍ତ୍ରୀକି ବେହ୍ୟା ଖୋଜିବାରେ ଯେତେବେଳେ ଲଗାଇଲେ, ସେତେବେଳେ ଛାମୁ ବେହ୍ୟା ନ ହୋଇ କ'ଣ ହେବେ ?

ରଜା କହିଲେ – ସତକଥା । ଆଚ୍ଛା, ଆମେ ଜଣେ ବେହ୍ୟା ହେଲୁ । ପୁଣି ଆଉ ଜଣେ ତ ଦରକାର, ସେ କାହିଁ ?

ମନ୍ତ୍ରୀ କହିଲେ – ଆଜ୍ଞା ଆଉ ବେହ୍ୟା ମୁଁ ।

ରଜା କହିଲେ – ତୁମେ କିମିତି ବେହ୍ୟା ହେଲ ?

ମନ୍ତ୍ରୀ କହିଲେ – ମୁଁ ବେହ୍ୟା କି ସବୁଠୁଁ ବଳକା ବେହ୍ୟା । ଯେତେବେଳେ ମୁଁ ରାଜ୍ୟ ଗୋଟାକାର ମନ୍ତ୍ରୀଟିଏ ହୋଇ ସବୁ ଛାଡ଼ିଦେଇ ଛାମୁଙ୍କ କଥାରେ ବେହ୍ୟା ଖୋଜି ବୁଲିଲି, ସେତେବେଳେ ମୋଠୁଁ ବଳି ବେହ୍ୟା କିଏ ଅଛି ?

ରଜା କହିଲେ – ଠିକ୍ କହିଛ; ନୋହିଲେ କି ମନ୍ତ୍ରୀ । ଆଜିଠାରୁ ମୋର ଗୁରୁ ହେଲ । ଆଉ ବେହ୍ୟା ଖୋଜା ଦରକାର ନାହିଁ । ଏବେ ଯିମିତି ପରାମର୍ଶ ଦେବ ସିମିତି ରାଜକାର୍ଯ୍ୟ ହେବ । ସେହିଦିନଠାରୁ ମନ୍ତ୍ରୀଙ୍କ ପରାମର୍ଶରେ ରାଜ୍ୟରେ ଭଲ ବୁଝାମଣା ହେଲା । ସେ ରାଜ୍ୟରେ ଆଉ ବେହ୍ୟା ରହିଲେ ନାହିଁ ।



## କୌତୁକ କୁଞ୍ଜ

# ପଣା ହେଲାଣି

ଆମେ ଦେଶରେ କରଣମାନେ ମହତ୍ତ୍ୱକୁ ଭାରି ଜଗନ୍ତି । ଯାହାର ଖାଇବାକୁ ଦାନା, ପିନ୍ଧିବାକୁ କନା ନାହିଁ, ସେ ମଧ୍ୟ ମହତ୍ତ୍ୱ ଛାଡ଼େନାହିଁ ।

ଗୋଟିଏ ଗାଁ'ରେ ଜଣେ କରଣସା'ନ୍ତ ଥିଲେ । ତାଙ୍କ ବାପା, ବଡ଼ବାପା ବଡ଼ ଘରକଲା ଲୋକଥିଲେ । ସେତେବେଳେ ଜମିବାଡ଼ି, ଟଙ୍କା କଉଡ଼ିର ଅଭାବ ନ ଥିଲା । ଭୋକୀ, ଶୋଷୀ କେହି ଦୁଆରୁ ଫେରୁ ନ ଥିଲା । ଦାଣ୍ଡରେ ସେ ଘରର ଭାରି ଖାତିର ଥିଲା । କାଳକ୍ରମେ ଜମିବାଡ଼ି ବିକ୍ରି ହୋଇଗଲା, ଟଙ୍କା କଉଡ଼ି ସବୁ ସରିଗଲା । ପଛକୁ ଇମିତି ହେଲା ଯେ, ପେଟପୂରାଇ ମୁଠେ ଖାଇବାକୁ ମିଳିଲା ନାହିଁ । ଦିନେ ଦିନେ ମଧ୍ୟ ଓପାସ ରହିବାକୁ ହେଲା । ତଥାପି ପଟ୍ଟନାୟକେ ଦିନେ ହେଲେ ବେମହତ୍ତ୍ୱ ହୋଇନାହାନ୍ତି ।

ପଟ୍ଟନାୟକଙ୍କ ଘରେ ତାଙ୍କର ସ୍ତ୍ରୀ, ଆଉ ପୁଅଟିଏ । ଏହି ତିନିପ୍ରାଣୀ କୌଣସି ପ୍ରକାରେ ଦୁଃଖେସୁଖେ ଚଳନ୍ତି । ନିଜର ସାମାନ୍ୟ ଧାନ ଆଦାୟ ହୁଏ । ତାକୁ କୁଟା ଦେବେ କ'ଣ, ନିଜେ ନିଜେ କୁଟିଥା'ନ୍ତି । ପୁଅଟି ନିତାନ୍ତ ଛୋଟ । ତେଣୁ ସବୁଦିନେ ଭାର୍ଯ୍ୟା କୁଟନ୍ତି, ବର ଶୁଖାଇ ଦିଅନ୍ତି । ଏହିପରି ଚଳୁଥା'ନ୍ତି ।

ଦିନେ ପଟ୍ଟନାୟକଙ୍କ ଭାର୍ଯ୍ୟା କୁଟିବ ବୋଲି ଢିଙ୍କିମୁଣ୍ଡାରେ ଧାନ ପଣିଦେଲା ବେଳକୁ ଦାଣ୍ଡଦୁଆରେ ଜଣେ କିଏ ଭଦ୍ରଲୋକ ପଟ୍ଟନାୟକଙ୍କୁ ଡାକିଲେ । ପଟ୍ଟନାୟକେ କଥାବାର୍ତ୍ତା କରିବାକୁ ଦାଣ୍ଡକୁ ଗଲେ । ଗୁଡ଼ାଏ କଥାବାର୍ତ୍ତା ହବାରୁ ପଟ୍ଟନାୟକେ ବହୁକାଳ ସେଠାରେ ଅଟକି ଗଲେ । ଏଣେ ଭାର୍ଯ୍ୟା ଧାନ ପଣିଦେଇ ପଟ୍ଟନାୟକଙ୍କୁ ଚାହିଁ ରହିଛନ୍ତି । ଜଣେ କିଏ ଶୁଖାଇ ଦେଲେ ସିନା କୁଟା ହୁଅନ୍ତା । ବେଳ ପୁଣି ବୁଡ଼ିଯାଉଛି, ତାଙ୍କ ଗପ ସରୁନାହିଁ, ପଟ୍ଟନାୟକିଆଣୀ ମହା ବ୍ୟସ୍ତ । ପୁଅକୁ ପଠାଇଦେଇ ଅବା ଡାକନ୍ତେ; ମାତ୍ର ଧାନଶୁଖା କଥା ଶୁଣିଲେ ଭଦ୍ରଲୋକ ଦି'କଡ଼ାର

କରିଦେବେ । ଏହି ଆଶଙ୍କାରେ ପୁଅକୁ ପଠାଇପାରୁନଥା'ନ୍ତି । ଯେଉଁଠୁ ବେଶି ବିଳମ୍ବ ହେଲା, ତହୁଁ ଗୋଟେ ବୁଦ୍ଧି ପାଞ୍ଚିଲେ, କ'ଣ କଲେ କି ? ଧାନ ପଣା ହେଲାଣି କହିଲେ ସିନା ମହତ୍ତ୍ୱ ଯିବ, ଖାଲି ପଣା ହେଲାଣି କହିଲେ, ମହତ୍ତ୍ୱକୁ ମହତ୍ତ୍ୱ ରହିବ, କାମକୁ କାମ ହେବ । ଏହା ସ୍ଥିର କରି ପୁଅକୁ ଡାକି କହିଲେ – ଆରେ ପୁଅ । ତୁ ଯିବୁକି, ବାପାଙ୍କୁ କହିବୁ – ପଣା ହେଲାଣି, ବେଗେ ଘରକୁ ଆସ । ଧାନ ପଣାହେଲାଣି ବୋଲି କହିବୁ ନାହିଁ ।

ପୁଅ ମାଆଙ୍କ କଥା ଅନୁସାରେ ଯାଇ କହିଲା – ବାପା ! ମା କହିଲେ ପଣା ହେଲାଣି, ବେଗେ ଆସ । ବାପା କହିଲେ – ହଁ, ମୁଁ ଯାଉଚି, ତୁ ଯା' ।

ଭଦ୍ରଲୋକ ପଣା କଥା ଶୁଣି ଭାବିଲେ – ଯେ ତ ପୁଣି ବେଳରେ ବଡ଼ଘରର ପୁଅ ଥିଲେ, ଯା'ଙ୍କର ବୋଧହୁଏ ସବୁଦିନ ପଣା ଟିକିଏ ଟିକିଏ ହଉଥିବ । ଏହାଭାବି ସେ କହିଲେ – ଆପଣଙ୍କର କ'ଣ ସବୁଦିନ ପଣା ହୁଏ ?

ସେ କହିଲେ –ସବୁଦିନ ପଣା ନ ହେଲେ କ'ଣ ଚଳିବ ?

ଭଦ୍ରଲୋକ କହିଲେ – ଯେବେ ପଣା ହୋଇଗଲାଣି, ତେବେ ଯା'ନ୍ତୁ, ଯା'ନ୍ତୁ । ଆଉ ବିଳମ୍ବ କରିବା ଉଚିତ୍ ନୁହେଁ ।

ଭଦ୍ରଲୋକ ପଣାକୁ ମିଶ୍ରିପଣା ବୁଝିଲେ; କିନ୍ତୁ ପଟ୍ଟନାୟକେ ଧାନପଣା ହେବା ବୁଝିଲେ ।

ପଟ୍ଟନାୟକିଆଣୀ କେଡ଼େ ଚତୁରୀ ? କଥାଟି କହି ଜାଣିଲେ ବୋଲି ସିନା ମହତ୍ତ୍ୱକୁ ମହତ୍ତ୍ୱ ରହିଲା, କାମକୁ କାମ ହେଲା, ନ ହେଲେ ମହତ୍ତ୍ୱ ଯାଇଥିଲା ତ ?

ଧନ୍ୟ ଚତୁରତା !



# ନବାବଙ୍କ ନାତି

ଆମ ଦେଶରେ ନବାବ କହିଲେ କଥା ସରିଛି । ତାଙ୍କର ଯିମିତି ଧନଦୌଲତ, ସିମିତି ଆଡ଼ାଚୌଡ଼ା, ନବାବଙ୍କ ଭୋଗଠୁଁ ବଳି ଭୋଗ ନାହିଁ । ଚାକରବାକର ପଣପଣ, କଥା ପଦକୁ ହଜାର ହଜାର ଟଙ୍କା ଖରଚ । ଇମିତି ଜଣେ ନବାବ ଥିଲେ । ବାପଅଜା ଚୌଦପୁରୁଷ ଧରି ମାନ ମହତ୍ତ୍ୱ ରଖି ଚଳି ଆସିଲେ ।

ବସିଖାଇଲେ ନଈବାଲି ସରେ । ଧନ ସରିବାର ଖରଚ ଗୋଟିଏ ବାଟ । ନବାବୀ ଖରଚରେ ସେ ଧନ ଆଉ କେତେ କାଳ ରହନ୍ତା ? ଧନସବୁ ସରିଗଲା, ନବାବ ଖପଡ଼ ହୋଇଗଲେ । ପଛକୁ ପେଜ ସାଙ୍ଗକୁ ଲୁଣ ଟିକିଏ ମିଳିଲା ନାହିଁ ।

ଧନ ସିନା ସରିଗଲା, ଦାଣ୍ଡରେ ଯେ ହେଲେ କହିବ ତ ନବାବଙ୍କ ନାତି । ଏ କ'ଣ କମ୍ ମହତ୍ତ୍ୱ ? ନବାବ ଯେଡ଼େ ଗରିବ ହେଲେ ମଧ୍ୟ ଏ ମହତ୍ତ୍ୱଟିକ ଛାଡ଼ନ୍ତି ନାହିଁ । ବୁଝିଲାବେଳକୁ ଯାହାଙ୍କ ବାପା ବଡ଼ବାପା ଘିଅ ଶାକରକୁ ଥୁ ଥୁ କରୁଥିଲେ, ଆଜି ତାଙ୍କ ନାତିକି ବାସିଓଳିକି ଦାନା ମିଳୁନାହିଁ ।

ନବାବଙ୍କ ନାତି ଖାଆନ୍ତି କ'ଣ ନା, ଗଣ୍ଡେ ପଖାଳ ଭାତ, ତା ସାଙ୍ଗକୁ ମାଛ ନୁହେଁ, ମାଂସ ନୁହେଁ, ଦି'କଡ଼ା କୌଡ଼ିର ଦି'ଖଣ୍ଡ କୋଚିଆପୋଡ଼ା ତରକାରି ।

ଦିନେ କ'ଣ ହେଲା ନା, ନବାବଙ୍କ ନାତିର ଖାନା ଖାଇବା ବେଳ ହୋଇଗଲାଣି, ତେତିକିବେଳକୁ ହୋଇ ଜଣେ କିଏ ଭଦ୍ରଲୋକ ଦୁଆରେ ଡାକ ପକାଇଲେ । ନବାବ ଆଉ ଖାଇବେ କ'ଣ ସାଙ୍ଗେ ସାଙ୍ଗେ ଗଲେ ଭଦ୍ରଲୋକଙ୍କ ପାଖକୁ ।

ନବାବଙ୍କର ଏକମାତ୍ର ତରକାରି କୋଚିଆପୋଡ଼ା ଶିକାରେ ଥିଲା । ବିରାଡ଼ି କାହୁଁ ବାସେନାବାରି ଝାମ୍ପମାରି ସେ ସବୁତକ ଖାଇଦେଲା ।

ନବାବଙ୍କ ଘରେ ସେଇ ପୁରୁଣା କାଳର ବବୁର୍ଚ୍ଚି ବୁଢ଼ାଟିଏ ଥାଏ । ସେ ଦେଖିଲା ଯେ କୋଚିଆଟକ ବିରାଡ଼ି ଖାଇଲା, ନବାବ ଖାଇବେ କ'ଣ ? ସେ କିଛି ଠିକଣା କରି ନ ପାରି ନବାବଙ୍କୁ ଜଣାଇବାକୁ ଗଲା । ଦେଖିଲା – ନବାବ ଜଣେ ଭଦ୍ର ଲୋକଙ୍କ ସାଙ୍ଗେ କଥାବାର୍ତ୍ତା କରୁଛନ୍ତି । ଏ ଛୋଟକଥା ବା ଜଣାଇବ କିପରି ? ଜଣାଇଲେ ତ ମହତ୍ତ୍ୱ ମର୍ଯ୍ୟାଦା ପଦାରେ ପଡ଼ିଯିବ, ନ ଜଣାଇଲେ ତ ନ ଚଳେ । ବୁଢ଼ା ତ ପୁରୁଣାକାଳିଆ ଲୋକ, ସେ ଗୁମର ନ ଖୋଲି ଅକଲରେ କହିଲା –ହଜୁର । ବିଲ୍ ବାହାଦୁର କୁଞ୍ଜ୍ ମାହାଲ ଲୁଟ୍ କର୍‌ଲିଆ ।

ଏଥିରୁ ନବାବ ବିରାଡ଼ି କୋଚିଆ ଖାଇବା କଥା ବୁଝିନେଲେ; କିନ୍ତୁ ଭଦ୍ରଲୋକ ବୁଝିଲେ – ଏ ତ ନବାବ ଘର, ଯାଙ୍କର ତ କେତେ କ'ଣ ମାହାଲ ଥିଲା । କେତେ କେତେ ସର୍ଦାର ସେନାପତି ବା ନ ଥିଲେ । ବୋଧହୁଏ କୁଞ୍ଜ୍ ମାହାଲ ବୋଲି ଖଣ୍ଡେ ମାହାଲ ରହିଯାଇଥିଲା । ବିଲ୍ ବାହାଦୁର ବୋଲି କେହି ସର୍ଦାର ତାହା ଲୁଟିକରି ନେଲା ।

ନବାବ ପୁଣି ନିଜର ଇଜ୍ଜତ୍ ରଖିବାକୁ ବବୁର୍ଚ୍ଚିକି କହିଲେ – ଓ ମାହାଲ୍ ଦୋ ଲାଖ୍ ରୋପେୟାମେ ଖରିଦ୍ ହୁଆଥା ନା ? ବୁବୁର୍ଚ୍ଚି କହିଲା – ଜୀ । ନବାବ କହିଲେ – ବଡ଼ା ଅବ୍‌ସୋସ୍ କା ବାତ୍ ହେ ।

ଭଦ୍ରଲୋକ କିଆଁ ବୁଝିବେ ଦି'କଡ଼ା କଉଡ଼ିରେ କୋଚିଆ କିଣା ହୋଇଥିଲା ବୋଲି । ସେ ବୁଝିଲେ – ମାହାଲଟା ତେବେ ଦି'ଲକ୍ଷ ଟଙ୍କାରୁ କମ୍ ନୁହେଁ ତ ।

ନବାବ କହିଲେ – ଆଚ୍ଛା, ସିକନ୍ଦର ଖାଁ ନେହିଁ ଥା ? ଅର୍ଥାତ୍ ସେ କ'ଣ ଶିକାରେ ନ ଥିଲା ?

ବବୁର୍ଚ୍ଚି କହିଲା – ହଜୁର, ଓ ଥା । ଲେକିନ୍ ଟିକନ୍ଦର ଶାଁ ବେହିମାନ କିଆ, ଔର ଗେଟମ୍ ଖାଁ ଉସକୁ ମଦତ୍ ଦିଆ । ଅର୍ଥାତ ସେ ଶିକାରେ ଥଲା । ବିରାଡ଼ି ଗେଟମ୍ ଖାଁ ବୋଇଲେ ଓଳିଆ ସାହାଯ୍ୟରେ ଟିକନ୍ଦର ଖାଁ ଅର୍ଥାତ୍ ଟିକାଠିଆରେ ଚଢ଼ି କୋଚିଆଟକ ଖାଇଗଲା । ଏହା ସିନା ନବାବ ବୁଝିଲେ; କିନ୍ତୁ ଭଦ୍ରଲୋକ ବୁଝିଲେ ସିକନ୍ଦର ଖାଁ, ଗେଟମ୍

ଖାଁ, ଟିକନ୍ଦର ଖାଁ ଏମାନେ ନିଶ୍ଚୟ ଜଣେ ଜଣେ ସର୍ଦ୍ଦାର । ଏସବୁ ମାହାଲ ଲୁଟିକରି ନିମକ୍‌ହାରାମି କରିଛନ୍ତି ।

ନବାବ ପୁଣି ପଚାରିଲେ – କ୍ୟୌ, ଢାକେ ଖାଁ କ୍ୟା ନେହିଁ ଥା ? ଅର୍ଥାତ୍ ସେଥିରେ କ'ଣ ଢାଙ୍କୁଣୀ ନ ଥିଲା ?

ବବୁର୍ଚ୍ଚି କହିଲା – ହଜୁର ! ଓ ତ ପହିଲା ଲଢ଼େଇ ସେ ଭାଗ୍ ଗୟା । ଅର୍ଥାତ୍ ବିରାଡ଼ିର ପ୍ରଥମ ଝାମ୍ପରେ ତାହା ତଳେ ପଡ଼ିଗଲା ।

ଭଦ୍ରଲୋକ ବୁଝିଲେ – ଢାକେ ଖାଁ କେହି ନିମକସଚ୍ଚା ସର୍ଦ୍ଦାର ପହିଲା ଯୁଦ୍ଧରେ ନିଶ୍ଚୟ ହାରିଗଲା ।

ନବାବ କହିଲେ – ଆଚ୍ଛା, ଠେଙ୍ଗମ୍ ଖାଁ କୁଛ୍ ନେହିଁ କ୍ୟା ? ଅର୍ଥାତ୍ ଠେଙ୍ଗାରେ କିଛି ହେଲା ନାହିଁ ?

ବବୁର୍ଚ୍ଚି କହିଲା – ଖୁଣ୍ଟମ୍ ଖାଁ ଉସ୍‌କୁ ରୋକ୍ ଲିଆ । ଅର୍ଥାତ୍ ଖୁଣ୍ଟରେ ଠେଙ୍ଗା ବାଜି ରୋକି ହୋଇଗଲା ।

ନବାବ – ଆଚ୍ଛା, ଜାନେ ଦୋ, ମସୁର ଖାଁ ହେଏ ତ ? ଯବ ହେ, ତବ୍ ଉସ୍‌କୋ ଲେକେ କାମ୍ ଚଲାଓ, ହାମ ଯାତେ ହେଁ । ଅର୍ଥାତ୍ ଯେବେ ମସୁର ଡାଲି ଅଛି, ତେବେ ସେଥିରେ କାମ ଚଳାଅ । ମୁଁ ଯାଉଛି ।

ବବୁର୍ଚ୍ଚି ଜୀ ବୋଲି କହି ସଲାମ କରି ଭିତରକୁ ଗଲା ।

ଭଦ୍ରଲୋକ ସେହିପରି ଠେଙ୍ଗମ୍ ଖାଁ, ଖୁଣ୍ଟମ୍ ଖାଁ, ମସୁର ଖାଁକୁ ଜଣେ ଜଣେ ସର୍ଦାର ବିଚାରିଲେ; କିନ୍ତୁ ଏତେଗୁଡ଼ିଏ ସର୍ଦାର ନିମକହାରାମି କରିବାର ଜାଣି କହିଲେ, ତୋବା, ତୋବା, ନୌକର ଲୋକ ବିଲ୍‌କୁଲ୍ ନିମକ୍‌ହାରାମ ବନ ଗୟା । ଇସ୍‌କୋ କ୍ୟା ହୋଗା, ଖୋଦା କୋ ମାଲୁମ୍ । ଏହା କହି ସଲାମ କରି ଘରକୁ ଗଲେ । ନବାବଙ୍କ ନାତି ଘରକୁ ଆସି ମସୁର ଡାଲିରେ ପଖାଳତକ ଖାଇ ସେ ଦିନକ ଚଳାଇଲେ ।

ନବାବ ଆଉ ବବୁର୍ଚ୍ଚିର ଭୋପାଙ୍ଗିରେ କିପରି ଇଜ୍ଜତ ରହିଲା, ଭଦ୍ରଲୋକ କିପରି ହେଙ୍ଗୁ ଶୁଙ୍ଘିଲେ, ଦେଖିଲ ତ ?



# ସବୁ ଯାଉ, ମହତ ଥାଉ

ଜଣେ ଭଦ୍ରଲୋକ ଥିଲେ । ସେ ଜନ୍ମରୁ ଦରିଦ୍ର । ଦିନେ ହେଲେ ଖୁଦଯାଉ ଛଡ଼ା ଭାତ ଖାଇନାହାନ୍ତି । ବାସନ ମଧ୍ୟରେ ଥିଲା ଏକମାତ୍ର ବାସନ ଖଣ୍ଡିଏ କୁଣ୍ଡା ପଥୁରି ।

ଦିନେ ସେ ପିଣ୍ଡାରେ ବସି ଜଣେ ଭଦ୍ରଲୋକଙ୍କ ସାଙ୍ଗେ ଗପସପ କରୁଛନ୍ତି, ଭାର୍ଯ୍ୟା ଏ କଥା ଜାଣେ ନାହିଁ । ଖାଇବା ବେଳ ହେବାରୁ କୁଣ୍ଡା ପଥୁରିରେ ଜାଉତକ ବାଢ଼ିଦେଇ ବାପାଙ୍କୁ ଡାକିଦେବାକୁ ପୁଅକୁ ପଠାଇଲା । ପୁଅ ବଡ଼ ଚତୁର ପିଲା । ସେ ଦେଖିଲା, ଜଣେ ଭଦ୍ରଲୋକ ବସିଛନ୍ତି, ଖୁଦଯାଉ କଥା କିପରି କହିବ ? କହିଲେ ଦାଣ୍ଡରେ ମହତ୍ତ୍ୱଟା ଦି'କଡ଼ାର ହେବ । ତେଣୁ କହିଲା – ବାପା ! ଖୁଦଗଡ଼ ସା'ନ୍ତ ପଥରଗଡ଼ରେ ହାଜର । ବାପା ପ୍ରକୃତ କଥା ଜାଣିପାରି ତରକାରି କଅଣ ହେଇଚି ଜାଣିବାକୁ ପଚାରିଲେ – ଆଚ୍ଛା, ତାଙ୍କ ସାଙ୍ଗରେ କିଏ ?

ପୁଅ ଖଡ଼ା ଓ ଖଡ଼ାଶାଗ କଥା ନ କହି କହିଲା – ଖାଡ଼େଙ୍ଗା ବାପ ପୁଏ । ବାପା ଠିକ୍ ବୁଝିନେଲେ ।

କିନ୍ତୁ ଭଦ୍ରଲୋକ ବୁଝିଲେ – ଖୁଦଗଡ଼ ଗୋଟାଏ କୌଣସି ଜାଗା ହୋଇଥିବ । ତାହାରି ସା'ନ୍ତ କେହି ୟାଙ୍କର ବନ୍ଧୁବାନ୍ଧବ ହୋଇଥିବେ । ଖାଡ଼େଙ୍ଗା ବୋଲି ଜଣେ କେହି ବୋଧହୁଏ ସେହି ସା'ନ୍ତଙ୍କର ପୁରୋହିତ । ପଥରଗଡ଼ ବୋଧହୁଏ ୟାଙ୍କର ଇଲାକା । ଖୁଦଗଡ଼ ସା'ନ୍ତ ନିଜର ପୁରୋହିତ ଖାଡ଼େଙ୍ଗା ଏବଂ ଖାଡ଼େଙ୍ଗାଙ୍କ ପୁଅକୁ ସାଙ୍ଗରେ ଧରି ୟାଙ୍କ ଇଲାକା ପଥରଗଡ଼ରେ ପହଞ୍ଚିଛନ୍ତି । ଭଦ୍ରଲୋକ ଅନୁମାନରେ ଏହାହିଁ ବୁଝି ନିଜ ଘରକୁ ଗଲେ । ଘରମାଲିକ ଘରକୁ ଆସି ଖଡ଼ା ଓ ଖଡ଼ାଶାଗ ଲଗାଇ କୁଣ୍ଡିକ ଖୁଦଯାଉ ଖାଇ ମଉଜରେ ରହିଲେ ।

ପିଲାଟି କଥା କହିଜାଣିଲା ବୋଲି ସିନା ମହତ ରହିଲା । ନ ହେଲେ ତ ଯାଇଥିଲା ।



# ଜାକି ଥା

ଜଣେ ଜମିଦାରଙ୍କ ପୁଅର ଏକୋଇଶିଆ ହେଲା । ଉତ୍ସବ ପାଇଁ ବହୁତ ଆୟୋଜନ ହେଲା । ବହୁତ ଲୋକ ଗୁଣ୍ଡ ହେଲେ । ରାମଲୀଳା, ଗୋଟିପୁଅ, ବୋହୂ ସୁଆଙ୍ଗ, ଶବର-ଶବରୁଣୀ – ଏହିପରି କେତେ କଅଣ ନାଟବାଲା ଆସିଲେ । ବଛା ହୋଇ ବାଦୀପାଲା ଦଳଟିଏ ମଧ୍ୟ ଆସିଲା । ଜମିଦାରେ ସାଙ୍ଗସାଥୀ, ଅମଲାଅମଲୀ ସାଙ୍ଗରେ ଧରି ଗୋଟିକ ପରେ ଗୋଟିଏ ନାଟ ତାମସା ଦେଖୁଥା'ନ୍ତି । ଶେଷକୁ ଯାଇ ପାଲାବାଲାଙ୍କ ପାଖରେ ପହଞ୍ଚିଲେ । ମାଲିକ ଆସିବାରୁ ପାଲାବାଲା ଜୋରସୋରରେ ପାଲା ଚଲାଇଲେ । ଇମିତି ଘମାଘୋଟିଆ ପାଲା ହେଲା ଯେ ଦେଖଣାହାରୀ ସେଥିରେ ମଜ୍ଜିଗଲେ ।

ପାଲାଦଳରେ ଜଣେ ଶ୍ରୀଗାୟକ, ଜଣେ ଡାହାଣ ପାଳିଆ, ଜଣେ ଖୋଳ ବାୟକ, ତା'ଛଡ଼ା କେତେ ଜଣ ଝାଞ୍ଜୁଆ ଥାଆନ୍ତି । ଜମିଦାର ଘର ଉତ୍ସବ, ଖାଇବା ପିଇବାର ଅଭାବ ନାହିଁ । ଯାହାର ଯେତେ ଇଚ୍ଛା, ସେ ସେତେ ଖାଉଛି । ପାଲାବାଲା ଜାଲିପୂରା ଭୋଜନ ମାରୁଥା'ନ୍ତି । ଶ୍ରୀଗାୟକ ଟିକିଏ ହରଡ଼ଡାଲି ପ୍ରିୟ । କେଉଁଗଣ୍ଠିରୁ ପଇସା ଖରଚ ହଉଚି, ସେ ମନମୂର୍ଚ୍ଛା ନ ଖାଇବ ? ଆଉ ଯାହା ଯିମିତି ଖାଇଲା, ସେଇ ହରଡ଼ଡାଲିରୁ ମନଇଚ୍ଛା ଗ୍ରାସେ ମାରିଦେଇଥାଏ । ଖାଲି ଖାଇଦେଲେ ତ ହେବ ନାହିଁ, ତାକୁ ପା'ର କଲେ ସିନା ହବ । ସେ ତ କାନପୁରୀ କଞ୍ଚା ହରଡ଼ଡାଲି । ସେଥିରୁ ପେଟେ ମାରିଦେଇ ଯିମିତି ପାଲାରେ ଠିଆ ହୋଇ ଗୁଡ଼ାଏ ଡିଆଁଡେଇଁ କଲା ସିମିତି ଘିଟ୍‌କିନି ପେଟ ଚଳିଲା । ଯେତେ ଯାହା ଉପାୟ କଲା, ସମ୍ଭଳା ହେଲା ନାହିଁ । ଏଣେ ପୁଣି ଜମିଦାର ଠିଆ ହୋଇଛନ୍ତି । ବିଚରା ଯାଏ କୁଆଡ଼େ ? ଯାଇପାରୁ ନାହିଁ କି ରହିପାରୁ ନାହିଁ । ବଡ଼ ସଙ୍କଟରେ ପଡ଼ିଲା । ଦୋ'ଘାଇରେ ପଡ଼ି ପଛକୁ ପାଲାସ୍ୱରରେ ଗାଇଲା –

ହରଡ଼ଡାଲି ଖାଇୟା ପେଟ ଘଡ଼ଘଡ଼ ହଇଲ ।

ବାୟକ ବଡ଼ ଚାଲାକ । ସେ ଖୋଳବଜା ବନ୍ଦ ନ କରି ଆହୁରି ତାନରେ ଖୋଳ ବଜାଇ ମୁହଁରେ କହୁଥାଏ –

ଜାକି ଥା, ଜାକି ଥା ।

ଶ୍ରୀଗାୟକ କଅଣ ଜାକି ନାହିଁ କି ? ସେ ଯେତେ ଜାକିବାର ଜାକିଲା ଅସମ୍ଭାଳ ଝାଡ଼ା, ତାକୁ ଜାକିବ କଅଣ ?

ଇମିତି ହଉହଉ ଲୁଗା ମାରୁହେବାରୁ ପୁଣି ଗାଇଲା –
'ଜାକିଆ ଜାକିଆ ଏବେ ଗଳିଆଁ ପଡ଼ିଲା ।'
ବାୟକ ତା ଶୁଣି ପୁଣି ଜୋରରେ ବଜାଇ କହିଲା –
'ଧାଁ କଟକଟ ପୋଖରୀ ନିକଟ ଧାଇଁ ଯା, ଧୋଇ ଆ ।'

ଏଣେ ଶ୍ରୀଗାୟକର ଗଳିଆଁ ପଡ଼ିବାରେ ଦେଖଣାହାରି ମୁହଁରେ ଲୁଗା ଦେଲେଣି । କି ଗନ୍ଧ ବୋଲି ସମସ୍ତେ କହିହେଲେଣି; କିନ୍ତୁ କିଛି ଠିକଣା କରି ପାରୁନାହାନ୍ତି । ଶେଷକୁ ଧାଇଁ ଯା, ଧୋଇଆରୁ ସବୁ ବୁଝିପାରି କହିଲେ –

'ଆରେ ମଠ ମାରା କଲେ ରେ, ମଠ ମାରା କଲେ ।'

ଏତିକିରେ ପାଲା ଶେଷ ।



# ଶଙ୍ଖଫୁଙ୍କା

ଆମର ଯେତେ ଦିଅଁ ଦେବତା ଅଛନ୍ତି, ସବୁଠୁଁ ମହାଦେବ ବେଗରେ ବର ଦିଅନ୍ତି । ସେଥିଯୋଗୁଁ ରୋଗବ୍ୟାଧି ହେଲେ ଲୋକେ ମହାଦେବ ସେବା କରନ୍ତି । ପୁଣି ପୂଜାପୂଜିରେ ଯାହା ନ ହେବ, ସନ୍ଧ୍ୟାବେଳେ ମହାଦେବଙ୍କ ପାଖେ ଶଙ୍ଖ ଫୁଙ୍କିଲେ ତାହା ହେବ ।

ଜଣେ ଲୋକର ପେଟରେ ଗୋଟେ ଅସାଧ ବେମାରି ହେଲା । ଯେତେ ଯାହା ଔଷଧ ମହୌଷଧି କଲା, କିଛି ଫଳ ହେଲାନାହିଁ । ବେଳକୁ ବେଳ ବଡ଼ କଷ୍ଟ ପାଇଲା । ତା କଷ୍ଟ ଦେଖି ଜଣେ କହିଲା – ଆରେ । ନିତି ସନ୍ଧ୍ୟାବେଳେ ମହାଦେବଙ୍କ ବେଢ଼ାରେ ଶଙ୍ଖ ଫୁଙ୍କିଲୁ, ବ୍ୟାଧି କିମିତି ନ ଯିବ, ଦେଖିବା । ସେ ଲୋକ ତା କଥାରେ ବିଶ୍ୱାସ କରି ରୋଜ୍ ସନ୍ଧ୍ୟାରେ ଶଙ୍ଖ ଫୁଙ୍କିଲା କିନ୍ତୁ କାହିଁ, ମାସ ମାସ ଧରି ତ ଶଙ୍ଖ ଫୁଙ୍କିଲା, ଟିକିଏ ହେଲେ ତ ଉଣା ହେଲା ନାହିଁ । ବରଂ ରୋଗ ପୁରୁଣା ହେବାରୁ ଦିନକୁ ଦିନ ବେଦନା ବଢ଼ିଲା । ସେ ରୋଗରେ କଲବଲ ହୋଇ ଦିନେ ଭାବିଲା, ଟାଣୁଆ କରି ଶଙ୍ଖ ଫୁଙ୍କି ଦେଲେ ମହାଦେବ ନ ଶୁଣିବେ କେମିତି, ଦେଖିବା । ଯା ବିଚାରି ଦମ୍ ନ ରଖି କଷିକରି ଶଙ୍ଖ ବଜାଇ ଦେବାରେ ମଳଦ୍ୱାରରୁ ପଦ୍ମଘରାଟି ବାହାରକୁ ବାହାରିପଡ଼ିଲା । ଯା ଦେଖି ବିଚରାର ହାଲୁକ ଶୁଖିଗଲା । ବିଚରା ଯାଏ କୁଆଡ଼େ ? ଆଉ କ'ଣ ସେ ଆଗ କଥା ମନରେ ଅଛି ? ଏବେ ପଦ୍ମଘରା କେମିତି ଭିତରକୁ ଯିବ, ଏଥିରେ ବଡ଼ ବ୍ୟସ୍ତ । ତେଣୁ କହିଲା –

"ହର, ବର ନ ମାଗଇ ଆଉ,
ଶଙ୍ଖ ଫୁଙ୍କୁ ଫୁଙ୍କୁ ପଦ୍ମ ବାହାରିଲା,
ପଦ୍ମ ମୋ ଭିତର ଯାଉ ।"

ପଦ୍ମ ଭିତରକୁ ଗଲା କି ନ ଗଲା, ତାକୁ ପଚାର ।



# ପୃଥିବୀ ନାସଦାନି ପରି ଗୋଲ

ଗୋଟିଏ ବ୍ରାହ୍ମଣଶାସନରେ ଗୋଟିଏ ପ୍ରାଇମେରୀ ସ୍କୁଲ ଥାଏ । ସେ କାଳରେ ଜଣେ ପଣ୍ଡିତ ସେ ସ୍କୁଲରେ ମାଷ୍ଟର ଥିଲେ । ପଣ୍ଡିତେ ସାହିତ୍ୟ, ଅଙ୍କ, ଇତିହାସ, ଭୂଗୋଳ ସବୁ ପଢ଼ାନ୍ତି ।

ଭୂଗୋଳରେ ପ୍ରଥମରୁ ପୃଥିବୀର ଆକାର କିପରି, ପଢ଼ିବାକୁ ହୁଏ । ପୃଥିବୀର ଆକାର ଗୋଲ, ଏହା ଜାଣିବା ପାଇଁ ମାଷ୍ଟରମାନେ ପିଲାମାନଙ୍କୁ ନାନା ଗୋଲ ଜିନିଷ ଦେଖାଇଥା'ନ୍ତି । ଏ ସ୍କୁଲର ପଣ୍ଡିତଙ୍କୁ ଆଉ ଗୋଲ ଜିନିଷ ଖୋଜିବାକୁ ହେଲାନାହିଁ । କାହିଁକି ନା ପଣ୍ଡିତେ ଜଣେ ନାସଶୁଙ୍ଘାଳୀ । ସେଥିଯୋଗୁଁ ସବୁବେଳେ ଅଣ୍ଟାରେ ଗୋଟିଏ ନାସଦାନି ଖୋସିଥା'ନ୍ତି । ସେ ଦାନିଟି ରଣଗୁଆରେ ତିଆରି । ରଣଗୁଆଗୁଡ଼ାକ ଗୋଲ । ପୃଥିବୀର ଆକାର ଗୋଲ ବୋଲି ବୁଝାଇଲାବେଳକୁ ପଣ୍ଡିତେ ଚଟକିନା ନାସଦାନିଟି କାଢ଼ି ପିଲାମାନଙ୍କୁ ଦେଖାଇଦେଇ କହନ୍ତି – ବୁଝିଲ ପିଲେ । ପୃଥିବୀ ଠିକ୍ ମୋରି ନାସଦାନି ପରି ଗୋଲ । ପିଲାଏ ବୁଝିଲେ – ପଣ୍ଡିତଙ୍କ ନାସଦାନି ଯିମିତି, ପୃଥିବୀ ସିମିତି ।

ପଣ୍ଡିତଙ୍କ ଆଉ ଗୋଟିଏ ଦାନି ଥାଏ । ସେଇଟି ବାଉଁଶ ଗଣ୍ଠିରେ ତିଆରି ଏବଂ ଦେଖିବାକୁ ଲମ୍ବା । ପଣ୍ଡିତେ କୁଆଡ଼େ ଭୋଜିମଉଜକୁ ଗଲେ ସଉକିରେ ସେ ଦାନିଟି ସାଙ୍ଗରେ ନିଅନ୍ତି । ସଭାରେ ବସି ଗପସପ କଲାବେଳେ ମଧ୍ୟ ସେଇ ଦାନିରୁ ନାସ କାଢ଼ି ଶୁଙ୍ଘନ୍ତି । ସ୍କୁଲ ପିଲାଏ ମଧ୍ୟ ସେକଥା ଦେଖିଛନ୍ତି ।

ଥରେ ସ୍କୁଲବାବୁ ପରୀକ୍ଷା କରିବାକୁ ଆସିଲେ । ଦୈବାତ୍ ସେ ବାବୁ ପଚାରିଲେ – ପୃଥିବୀର ଆକାର କିପରି ?

ପିଲାମାନେ ପଣ୍ଡିତଙ୍କଠାରୁ ଜ୍ଞାନ ପାଇଛନ୍ତି । ସେ ତ ଜାଣିଛନ୍ତି – ପୃଥିବୀ ପଣ୍ଡିତଙ୍କ ନାସଦାନି ପରି । ପୁଣି ଦେଖିଛନ୍ତି ପଣ୍ଡିତଙ୍କ ଦାନି ସ୍କୁଲରେ ଗୋଲ, ସଭା ସମିତିରେ ଲମ୍ବା । ତେଣୁ ସାଙ୍ଗେ ସାଙ୍ଗେ କହିଲେ – ପୃଥିବୀ ନାସଦାନି ପରି ସ୍କୁଲରେ ଗୋଲ, ସଭାସମିତିରେ ଲମ୍ବା ।

ବାବୁ ଏକଥା ବୁଝି ନ ପାରି ପଣ୍ଡିତଙ୍କୁ ପଚାରିଲେ – ପିଲାମାନେ ଏପରି କ'ଣ କହୁଛନ୍ତି ?

ପଣ୍ଡିତେ କହିଲେ – କାରଣ ଆଉ କିଛିନାହିଁ । ମୁଁ ମୋର ନାସଦାନି ଦେଖାଇ କହିଥିଲି – ପୃଥିବୀ ମୋରି ଦାନି ପରି ଗୋଲ । ମୋର ପୁଣି ଆଉ ଗୋଟିଏ ଲମ୍ବାଦାନି ଅଛି । ମୁଁ ତାହା ସଭାସମିତିରେ ବ୍ୟବହାର କରେ । ତାହା ମଧ୍ୟ ପିଲାଏ ଦେଖିଛନ୍ତି । ସେ ତ ବୁଝିଛନ୍ତି – ପୃଥିବୀ ମୋ ନାସଦାନି ପରି । ତେଣୁ ଦୁଇ ପ୍ରକାର ଦାନି ଦେଖି ଏପରି କହୁଛନ୍ତି ।

ବାବୁ କହିଲେ – ଯାହା ସବୁବେଳେ ଗୋଲ, ଆପଣ ସେପରି ଜିନିଷଟିଏ କହିଥା'ନ୍ତେ ସିନା । ନାସଦାନିଟିଏ କହିଲେ ଯେ ତାହା କ'ଣ ଗୋଟିଏ ପ୍ରକାରର ? ତାହା ଲମ୍ବା, ଗୋଲ, ତିନିକୋଣିଆ, ଚାରିକୋଣିଆ ଏହିପରି କେତେ ପ୍ରକାରର ହୋଇପାରେ । ଭାଗ୍ୟକୁ ଆପଣ ଦୁଇପ୍ରକାର ଦାନି ବ୍ୟବହାର କରନ୍ତି । ନ ହେଲେ ପୃଥିବୀର ଆକାର ଆଉ କେତେ ପ୍ରକାର କହିଥା'ନ୍ତେ ।

ପଣ୍ଡିତ ବିଚରା ଚୁପ୍, ଏଥିକି ଉତ୍ତର କ'ଣ ଅଛି ?



# ପଣ୍ଡିତଙ୍କ ପୁରାଣ ପଢ଼ା

ଜଣେ ଭଦ୍ରଲୋକର ବାଲ୍ମୀକି ରାମାୟଣ ଶୁଣିବାକୁ ମନହେଲା । ସେ ସେଥିପାଇଁ ଜଣେ ପଣ୍ଡିତ ଖୋଜିଲେ; ମାତ୍ର ସେ ଗାଁ'ରେ ଭଲ ସଂସ୍କୃତ ଜାଣିବା ପଣ୍ଡିତ ନ ଥିଲେ । ଦୈବାତ୍ ଜଣେ ଦରପାଠୁଆ ପଣ୍ଡିତ ଜୁଟିଲେ । ସେ ଭଲ ସଂସ୍କୃତ ଜାଣିନାହାନ୍ତି, କି ଦିନେ ହେଲେ ବାଲ୍ମୀକି ରାମାୟଣ ଛୁଇଁ ନାହାନ୍ତି । ଭଦ୍ରଲୋକ କହିବାରୁ ପୁରାଣ ପଢ଼ିବାକୁ ସେ ହଁ ଭରିଦେଲେ । ପୁରାଣ ଆରମ୍ଭ ହେଲା । ଦଶ ପାଞ୍ଚଜଣ ଶ୍ରୋତା ମଧ୍ୟ ଜମିଲେ । ପଣ୍ଡିତେ ତାଡ଼ି ତାଡ଼ି ପୁରାଣ ପଢୁଥା'ନ୍ତି । ଦିନେ ଗୋଟିଏ ଶ୍ଳୋକ ଏପରି ପଢ଼ିଲେ ଯେ ସେଥିରେ ଅର୍ଥ କିଛି ହେଲାନାହିଁ ।

ସେ ଥିଲା –

'ଦଶ ରାମ ଶରାଃ ପେତୁ ରାବଣସ୍ୟ ରଥୋପରି ।'

ଅର୍ଥାତ୍ ରାମଙ୍କର ଦଶୋଟି ଶର ରାବଣର ରଥ ଉପରେ ପଡ଼ିଲା । ପଣ୍ଡିତେ ତ ସଂସ୍କୃତ ପଢ଼ିବାକୁ ରମ୍ଭା, ସେ ପଢ଼ିଲେ –

'ଦଶରା, ମଶରାଃ, ପେତୁରା, ବଣସାର, ଥୋପରି'

ଶ୍ରୋତାମାନେ ଏହାଶୁଣି ଠୋ ଠୋ ହସିଲେ । ବିଚରା ପଣ୍ଡିତ ଲାଜରେ ଚୋର ପରି ହେଲେ । ଆଉ ଉପାୟ କ'ଣ ?

ପାଠ ନ ଥିଲେ ଲୋକର ଏହିପରି ଦଶା ହୁଏ ।



# ବେଳରୁ କୁଟୁଟୁଣୀଘର ଝିଅ

ଗୋଟିଏ ଗାଁ'ରେ ରାଣ୍ଡ ମାଇପିଟିଏ ଥାଏ । ସେ ବଡ଼ ଗରିବ, ବାସିଓଳିକି ଦାନା ନ ଥାଏ । ଯା'ର ତା'ର ଧାନକୁଟା ଆଣି କଷ୍ଟେମଷ୍ଟେ ଚଳେ । ତା'ର ଗୋଟିଏ ଝିଅ ଥିଲା । ଝିଅଟି ଗୋଟିଏ ଚାଉଳରେ ଗଢ଼ା । ଚାଲିଚଳଣରେ ଚତୁର । ତା'ର ବିବାହ ବୟସ ହେଲା । ଜୋଇଁଟିଏ କରିବ ବୋଲି ମା' କେତେ ଖୋଜିଲା । କୁଟୁଟୁଣୀଘର ବୋଲି ସମସ୍ତେ ନାକ ଟେକିଲେ ।

ଗୋଟିଏ ଦୂର ଗାଁ'ର ଜଣେ ଧନୀଲୋକର ପୁଅ ପାଇଁ କନ୍ୟା ଖୋଜା ଲାଗିଥାଏ । ସେ ଏ ପିଲାଟିକି ଡଉଲଡାଉଲ ଦେଖି ଆଉ କିଛି ନ ବୁଝି ତା ସଙ୍ଗରେ ପୁଅଟିକି ବିଭାଦେଲା । କୁଟୁଟୁଣୀ ଝିଅ ବୋଲି ଜାଣିଥିଲେ କେବେହେଲେ ତାକୁ ବୋହୂ କରି ନ ଥା'ନ୍ତା । ଦେଖିଲା ଶାଶୁଘରେ ମଧ୍ୟ ଗୋଟିଏ ଢିଙ୍କି ଅଛି । ତା ଦେଖି ମା'ଘର କଥା ମନେପଡୁଥାଏ ।

ଦିନେ ଶାଶୂ ଢିଙ୍କିଶାଳରେ ଠିଆ ହୋଇଥା'ନ୍ତି । ବୋହୂ ଏହା ଜାଣିପାରି ନ ଜାଣିଲା ପରି ହୋଇ ଢିଙ୍କିଶାଳକୁ ଗଲା । ଢିଙ୍କିଟି ଆଙ୍ଗୁଠି ଦେଖାଇ ଶାଶୂଙ୍କୁ କହିଲା, ମା ହେ । ତୁମ ଘରେ ଏଇଟା କ'ଣ ?

ଶାଶୂ, ବୋହୂ କଥା ଶୁଣି କାବା ହୋଇଗଲେ । ଭାବିଲେ କେତେ ବଡ଼ ଘରେ ତ ମାଇପେ ଧାନ କୁଟନ୍ତି । ଯେ ଇମିତି କେଡ଼େ ଘରଝିଅ ଯେ ଦେଖିନାହିଁ । ଏହା ଭାବି ଶାଶୂ କହିଲେ ଆଲୋ ସେ ପରା ଢିଙ୍କି ? ତୁମ ଘରେ କଅଣ ଢିଙ୍କି ନାହିଁ ?

ବୋହୂ କହିଲା – ସେ ଥିଲେ ମୁଁ ଚିହ୍ନିପାରି ନ ଥା'ନ୍ତି ? ଶୁଣିଚି ଢିଙ୍କି ବୋଲି ଗୋଟେ କ'ଣ ଅଛି ? ସେ ଢିଙ୍କି ତେବେ ଏଇଆ ?

ଶାଶୂ କହିଲେ ଆଲୋ କହନା, କହନା । ଲୋକେ ଶୁଣିଲେ ହସିବେ । ଏଇ କଥାରୁ ଲୋକେ କହନ୍ତି ବେଳରୁ କୁଟୁଟୁଣୀଘର ଝିଅ, ଢିଙ୍କିଟା ଦେଖିଲେ କହେ ଏଇଟା କଅଣ ?



# ଓସବ୍ ଭଏଁସା ଗାଣ୍ଡ୍‌ମେ ଗୟା

ଜଣେ ଦରଜି ଜଣେ ଗୌଡ଼ଠାରୁ ଲାଗୁଆ କରି କେତେଦିନ ଦୁଧ ଖାଇଲା; କିନ୍ତୁ ସୁରୁଖୁରୁରେ ପଇସାତକ ଦେଲାନାହିଁ । ବାକି ତୁଟାଇଦେବାକୁ ଗଉଡ଼ ବହୁତ ଥର କହିଲା, ଦରଜିଟା ଭଲଲୋକ ନୁହେଁ, ନିପଟ ଜାଲିଆଟେ । ଖାଲି ହାଁଜି ହାଁଜି କଲା, କିଛି ଦେଲାନାହିଁ । ଖାଲି ସେତିକି ନୁହେଁ, ଚଲାକି କରି ଓଲଟି ଗଉଡ଼ ନାଁରେ ଗୋଟେ ମିଛ ମକଦ୍ଦମା କରିଦେଲା ।

ସେତେବେଳେ କାଜି ଅମଳ । କାଜି ବୁଝାମଣା ସୃଷ୍ଟି ବାହାର ବୁଝାମଣା । କାଜି ଯୁଆଡୁ ମେଞ୍ଚେ ପା'ନ୍ତି, ଧର୍ମବୁଝାମଣା ସେଆଡ଼କୁ ହୁଏ, ଏକଥା ସମସ୍ତେ ଜାଣନ୍ତି ।

ତାରିଖକୁ ତାରିଖ, ଇମିତି କେତେ ତାରିଖ ହେଲା, ମକଦ୍ଦମା ଛିଣ୍ଡିଲା ନାହିଁ, ଯା ଦେଖି ଦରଜି ଗୋଟେ ଫିକର କଲା । କଅଣ କଲା ନା ଭଲ କରି ଗୋଟେ ପଗଡ଼ି ତିଆରି କରି କାଜିଙ୍କ ପାଖକୁ ଯାଇ ଲମ୍ବାଚଉଡ଼ା ସଲାମଟେ କରି ସେଉଟି କାଜିକୁ ଭେଟିଲା । ପଗଡ଼ିଟି ଜରିରେ ତିଆରି, ଚକ୍‌ଚକ୍ ହୋଇ ସୁନ୍ଦର ଦିଶୁଥାଏ । କାଜି ତାହା ଦେଖି ଲୋଭ ଛାଡ଼ି ପାରିଲେ ନାହିଁ । ସେଇଟି ନେଇ ମୁଣ୍ଡରେ ପିନ୍ଧିଲେ । ଦରଜି ଏହା ଦେଖି ଡିଗିରିରେ ସନ୍ଦେହ ନ ରଖି ନିଶ୍ଚିତ ହୋଇ ଘରେ ରହିଲା ।

କାଜି ଦରଜିଠାରୁ ପଗଡ଼ି ନେବା କଥା ଗଉଡ଼ ଜାଣିଲା, ଆଉ ଲୋକେ ମଧ୍ୟ ଜାଣିଲେ । ଲୋକେ ଗଉଡ଼କୁ କହିଲେ, କିରେ । ଦରଜି ତ ପଗଡ଼ି ଦେଇ କାଜିକି ହାତ କରିନେଲା, ତୁ ନାହିରେ ତେଲ ପକାଇ ବସିଛୁ କ'ଣ ?

ଗଉଡ଼ କହିଲା – ମୁଁ ଆଉ କରିବି କ'ଣ ? ତା'ର ସିନା ପଗଡ଼ି ଥିଲା ବୋଲି ଦେଲା ? ମୋର ତ କିଛିନାହିଁ, ମୁଁ ଦେବି କ'ଣ ? ମୋର ସମ୍ପତ୍ତି ହୋଇ ଏଇ ମଇଁଷିଟି । ସେ ଯାକୁ ନେବନାହିଁ କି, ଦେଲେ ମୁଁ ବଞ୍ଚିପାରିବି ନାହିଁ । ଆଉ ଦେବି କଅଣ ?

ଲୋକେ କହିଲେ – ତୁ ଆଗ ମଇଁଷିକି କାଜି ପାଖକୁ ନେ, ତା ଆଖି ପଡ଼ିଲେ ସିନା ନେବା ନ ନେବା କଥା ଜଣାପଡ଼ିବ । କିଛି ନ କରି ଇମିତି କହିଲେ କ'ଣ ହେବ ?

ଗଉଡ଼ ଲୋକଙ୍କ କଥାରେ ତାରିଖ ଦିନ ମଇଁଷିକି ପଘାରେ ବାନ୍ଧି କଚିରିକି ନେଇଗଲା । କଚିରି ଆଗରେ ଗୋଟେ ଖୁଣ୍ଟ ପୋତି ତାକୁ ବାନ୍ଧିଦେଲା । କାଜି ଦରଜି ପଗଡ଼ି ପିନ୍ଧି କଚିରି କରିବାକୁ ଆସିଲା । ଦେଖିଲା – ଗୋଟେ ମଇଁଷି ବନ୍ଧାହୋଇଛି । ପଚାରିଲା – ଏ ମଇଁଷି କାହାର ?

ଗଉଡ଼ ଏତକ ଶୁଣିବାରୁ କାଜି ପାଖକୁ ଯାଇ ଲମ୍ୱା ସଲାମ ପକାଇ କହିଲା – ହଜୁର, ମଇଁଷି ମୋର ।

କାଜି ପଚାରିଲା – ଏଠାକୁ କାହିଁକି ଆଣିଛୁ ? ସେ କହିଲା, ହଜୁରଙ୍କୁ ଦବାକୁ । କାଜି ଖୁସିହୋଇ କହିଲା – ଦୁଧ ଦଉଚି ନା ? ସେ କହିଲା – ହଜୁର, ଦଉଛି । ଗଉଡ଼ ଏଥିରେ ମନେ ମନେ ଖୁସିହୋଇ ଭାବିଲା – ଏଥର ଦରଜି ଯାଏ କୁଆଡ଼େ ? ଦେଖିବା ପଗଡ଼ି ବଡ଼, କି ମଇଁଷି ବଡ଼ ?

ଏହା ପରେ ନଥି ଆସିଲା, କାଜି ବିଚାର କରିବସିଲେ । ଦରଜି ସେତିକିବେଳେ କାଜି ପାଖକୁ ଯାଇ ଲମ୍ୱା ସଲାମ ପକାଇ କହିଲା –

"ହଜୁର । ଦେଖିଏ ଜେରା ଶିରକୋ ତକାକର ମେରା ମୋକଦ୍ଦମା ଫଏସଲା କର ଦେଦିଏ ।" ଅର୍ଥାତ୍ ମୋର ଯେଉଁ ପଗଡ଼ି ମୁଣ୍ଡରେ ପିନ୍ଧିଚ, ତାକୁ ଚାହିଁ ମୋତେ ଡିଗ୍ରି ଦିଅନ୍ତୁ ।

କାଜି ଏହାଶୁଣି କହିଲା – "ଯାଓ, ଭାଗୋ, ଓ ଭଯଁସା ଗାଣ୍ଡମେ ଗୟା ।" ଅର୍ଥାତ ତୋ ପଗଡ଼ି ମଇଁଷି ଠାରୁ ଅକାମି ହେଲା । କାରଣ ମଇଁଷିରୁ ଯାହା ଲାଭ ପଗଡ଼ିରୁ ତାହା ନୁହେଁ ।

ଦରଜିର ପଗଡ଼ି କି ପଗଡ଼ି ଗଲା, ମକଦ୍ଦମା ମାଡ଼ ଖାଇଲା । ଗଉଡ଼ ବିଚରା ମିଛ ମକଦ୍ଦମାରୁ ଖଲାସ ହୋଇ ଘରକୁ ଗଲା । ଧର୍ମାବତାର କାଜି ହାକିମ ମଇଁଷି ଦୁଧ ଖାଇ ବଦନ ଜମାଇ ପଗଡ଼ି ପିନ୍ଧି ବେଶ ସଜାଇଲେ ।

ଏଇ କଥାରୁ କଥା ପଡ଼ିଲେ ଲୋକେ କହନ୍ତି – ଓ ଭଏଁସା ଗାଣ୍ଡମେ ଗୟା ।



# ଦାରୀ ବୟସ ବୈରାଗୀରେ ଭରଣା

ଦାରୀମାନେ ବୟସ ଥିଲାବେଳେ ଯେତେ ଆଦର ପାଆନ୍ତି, ବୟସ ଗଲେ ଆଉ ତାହା ହୁଏ ନାହିଁ, ଏକଥା ସବୁ ଦାରୀ ଜାଣନ୍ତି । ସେଥିପାଇଁ ବୟସ କଥା ପଡ଼ିଲେ, ସେମାନେ ନିଜ ବୟସରୁ ଉଣା କରି କହନ୍ତି । ନ ହେଲେ ଲୋକେ ବୟସ ବେଶି ଜାଣିଲେ ଆଉ ପାଖ ମାଡ଼ିବେ ନାହିଁ । ଏ ଗଲା ଦାରୀ କଥା; କିନ୍ତୁ ବୈରାଗୀ କଥା ଏଥିରୁ ଅଲଗା ।

ବୁଢ଼ା ବୈରାଗୀକି ଲୋକେ ଯେତେ ଭକ୍ତି କରନ୍ତି, ପିଲା ବୈରାଗୀକି ସେତେ ନୁହେଁ, ଏ କଥା ବୈରାଗୀମାନେ ଜାଣନ୍ତି । ସେଇଥିପାଇଁ ବୈରାଗୀମାନେ ପ୍ରକୃତ ବୟସ ନ କହି ଅଧିକ କରି କହନ୍ତି । କାରଣ ଅଳ୍ପ ବୟସ କହିଲେ ଲୋକଙ୍କ ଠାରୁ ଅଳ୍ପ ଭକ୍ତି ମିଳିବ ।

ଏଣେ ଦାରୀ ଯେତେ ବୟସ କମାଏ, ତେଣେ ବୈରାଗୀ ସେତେ ବୟସ ବଢ଼ାଏ ।

କଥା ପଡ଼ିଲେ ଲୋକେ କହନ୍ତି – ଦାରୀ ବୟସ ବୈରାଗୀରେ ଭରଣା ।



# ପରପୁଅ ଲାଗି ଯୋଗିଆ କାନ୍ଦେ

ଗୋଟିଏ ଗାଁ'ରେ ସ୍ୱାମୀ ସ୍ତ୍ରୀ ଦୁଇଜଣ ଥିଲେ । ସେ ଦୁହିଁଙ୍କ ଛଡ଼ା ତାଙ୍କ ଘରେ ଆଉ କେହି ନ ଥିଲେ । ସ୍ୱାମୀଟି ଅନେକ ସମୟରେ ବିଦେଶ ଯାଉଥିଲା । ସେ ଚାରି ମାସରେ, ଛ ମାସରେ ଘରକୁ ଆସେ । ସ୍ୱାମୀ ନ ଥିଲାବେଳେ ସ୍ତ୍ରୀଟି ଏକୁଟିଆ ଥାଏ ।

ଜଣେ ପରପୁରୁଷଙ୍କ ସଙ୍ଗେ ତା'ର ଭାବଲାଭ ହେଲା । ସ୍ୱାମୀ ଏହାର ସୁରାକ କିଛି ଜାଣେ ନାହିଁ । ସ୍ୱାମୀ ଘରେ ଥିଲାବେଳେ ସେ ଦୁହିଁଙ୍କି ବଡ଼ ଅଡୁଆ ହୁଏ । ଥରେ ସ୍ୱାମୀ କିଛିଦିନ ଘରେ ରହିବାରେ ତା ସ୍ତ୍ରୀର ବଡ଼ ଅସୁବିଧା ହେଲା । ସେ ଆଉ ତା'ର ପ୍ରିୟ ବନ୍ଧୁଙ୍କ ସାଙ୍ଗେ ବସିଉଠି ପାରିଲାନାହିଁ । ଏପରି ହେବାରୁ ସେ ସ୍ତ୍ରୀଲୋକଟି ଭାବିଲା – ସ୍ୱାମୀ ଥିବାରୁ ସିନା ଅଡୁଆ ହଉଛି, ୟାକୁ ମୂଳରୁ ମାରିଦେଲେ ତ କଣ୍ଟା ତୁଟିଯିବ । ୟା ଭାବି ଦିନେ ସ୍ୱାମୀ ପାଇଁ ବିଷଗୋଳାଇ କିଛି ଚକୁଳି କଲା । ସ୍ୱାମୀ ଖାଇବା ପାଇଁ ତାହା ତାହାର ଶୋଇବା ଘରେ ଘୋଡ଼ାଇ ରଖିଦେଲା । ତାହାର ପ୍ରିୟ ବନ୍ଧୁ ଓର ଉଣ୍ଡୁଥିଲା । ଦୈବାତ୍ ସେଦିନ ତାର ସ୍ୱାମୀ ଠାଏ ଗପସପରେ ଲାଗିଗଲା । ପ୍ରିୟ ବନ୍ଧୁ ଏହା ଦେଖି ସେତିକିବେଳେ ଚୁପଚାପ ତା ଘରେ ପଶିଲା । ସେ ହଠାତ୍ ଶୋଇବା ଘରେ ପଶି ଦେଖିଲା – ଗୁଡ଼ିଏ ପିଠା ଘୋଡ଼ିଆ ହୋଇ ଥୁଆ ହୋଇଛି । ସେ ଭାବିଲା – ମୋରି ପାଇଁ ନିଶ୍ଚେ ଏ ପିଠା ଥୁଆ ହୋଇଛି । ତେବେ ଆଗେ ଏତକ ଖାଇଦିଏ, ତା'ପରେ ଦେଖାସାକ୍ଷାତ ହେବ । ଏହା ଭାବି ପିଠାତକ ଖାଇଦେଲା ସିନା, ଯାଏ କୁଆଡ଼େ ? ସାଙ୍ଗେ ସାଙ୍ଗେ ସେଇଠାରେ ନାରାୟଣ ପାଇଗଲା ।

କେତେ ସମୟ ପରେ ସେ ସ୍ତ୍ରୀଲୋକଟି ସେ ଘରକୁ ଆସି ଦେଖେ ତ ସର୍ବନାଶ । ସ୍ୱାମୀ ଏହା ଦେଖିଲେ ବାକି ରଖିବ ନାହିଁ, ଜାଣି ମୁର୍ଦ୍ଦାରଟାକୁ ଘୋଷାରି ଘୋଷାରି ନେଇ ବାଡ଼ିଆଡ଼େ ଫିଙ୍ଗିଦେଇ ଆସିଲା । ଏହାପରେ କେତେବେଳ ଉତ୍ତାରୁ ସ୍ୱାମୀ ଘରକୁ ଆସିଲା । ତାକୁ କାହିଁକି ହଠାତ୍ ଝାଡ଼ା

ତଲବ ହେଲା । ସେ ସାଙ୍ଗେ ସାଙ୍ଗେ ବାଡ଼ିଆଡ଼କୁ ଝାଡ଼ାଗଲା । ବାଡ଼ି କବାଟ ଫିଟାଇଦେଇ ଦେଖେ ତ ମୁର୍ଦ୍ଦାରଟେ ପଡ଼ିଚି । ସେ ଆଉ ଝାଡ଼ା ଫେରିବ କ'ଣ ? ସାଙ୍ଗେ ସାଙ୍ଗେ ଘରକୁ ଆସି ମୁର୍ଦ୍ଦାର ପଡ଼ିଥିବା କଥା କହିଲା । ସ୍ତ୍ରୀ ନ ଜାଣିଲା ପରି ହୋଇ କହିଲା – କିଏ କେଉଁଠୁ ଆସି ମରିପଡ଼ିଚି, ଆମେ କଅଣ କରିବା ?

ସ୍ୱାମୀ କହିଲା – ଇମିତି କହିଦେଲେ ହବ ? ଟିକିଏ ବୁଝି ବିଚାରି କହିଲେ ହେବ ସିନା । ବୁଝୁ ନାହିଁ, ମୁର୍ଦ୍ଦାରଟା ଯେତେବେଳେ ଆମ ଦୁଆରେ ପଡିଚି, ସକାଳେ ପୁଲିସ୍ ଆସିଲେ ଆଗ ଆମକୁ ଧରିବ । ସେଥିପାଇଁ କହୁଚି – ଏତିକିବେଳୁ ଉପାୟ କରିବା ଦରକାର । ମୋ ବିଚାରରେ ଚାଲ ଦିହେଁ ଘୋଷାରି ଘୋଷାରି ନେଇ ବଣରେ ଫିଙ୍ଗିଦେଇ ଆସିବା । ନ ହେଲେ ଆମ ଅବସ୍ଥା ଗାଆଣି ଗାଇବ ନାହିଁ ।

ସ୍ତ୍ରୀ ସେଥିରେ ରାଜି ହେବାରୁ ଦିହେଁ ଯାଇ ସେୟା କଲେ । ଯୋଗକୁ ଯେଉଁଠାରେ ମୁର୍ଦ୍ଦାର ପକାଇଲେ, ଦେଖିଲେ ସେଠାରେ ଗୋଟିଏ ମିରିଗ ମରିପଡ଼ିଚି । ତା ଦେଖି ଦିହେଁ ଆନନ୍ଦରେ ସେ ମିରିଗଟାକୁ ଘରକୁ ଆଣି ରନ୍ଧା ବଢ଼ା କରି ମଉଜ କଲେ ।

ତେବେ କ'ଣ ହୋଇଚି ନା, ଜଣେ ବାଣୁଆ ସେଇ ବଣରେ ଶିକାର କରୁଥିଲା । ତା'ର ଗୁଳିରେ ସେ ମିରିଗଟା ଜୀବନ କଲବଲରେ ଦଉଡ଼ିଆସି ସେଇଠେଇଁ ମରି ପଡ଼ିଥିଲା । ବାଣୁଆ ତା ଶିକାର ମିରିଗକୁ ଖୋଜୁଥିଲା । ଖୋଜି ଖୋଜି ସେ ମୁର୍ଦ୍ଦାର ପଡ଼ିଥିବା ଜାଗାରେ ପହଞ୍ଚିଲା । ଦେଖିଲା – ଗୋଟାଏ ମଣିଷ ମରି ପଡ଼ିଚି । ସେ ଭାବିଲା – ମୋ ଗୁଳିରେ ମିରିଗ ନ ମରି ଏ ମଣିଷଟା ମରିଚି । ଯେବେ ପୁଲିସ୍ ଏକଥା ଜାଣିବ, ତେବେ ମୋ କଥା ତେବେ ଶେଷ । ଏତିକିବେଳୁ ଉପାୟ କରିବା ଦରକାର ।

ଗୋଟିଏ ଚଉପାଢ଼ିରେ ଗୁଡ଼ାଏ ବାବାଜି କିଏ କେଉଁଆଡୁ ଆସି ପଡ଼ିଥା'ନ୍ତି । ତାଙ୍କ ଭିତରେ କେହି କାହାର ଚିହ୍ନା ନୁହେଁ । ସେଥିମଧ୍ୟରୁ କିଏ କେତେବେଳେ ଚାଲିଯାଇଛି; ପୁଣି କିଏ ନୂଆ ଆସୁଛି, ତା'ର ଠିକଣା

ନାହିଁ । ବାଣୁଆ ଏହା ଜାଣିଥିଲା । ସେ ଦେଖିଲା – ଏ ନିଶାରାତିରେ ବାବାଜିଯାକ ନିଶ୍ଚେ ନିଘୋଡ଼ ନିଦରେ ଶୋଇଥିବେ । ସେ ଭାବିଲା – ଏ ମୁର୍ଦ୍ଦାରଟାକୁ ତାଙ୍କରି ଭିତରେ ଶୁଆଇଦେଇ ଆସିଲେ କଣ୍ଟା ତୁଟିଯା'ନ୍ତା । ଏହା ଠିକ୍ କରି କଷ୍ଟେମଷ୍ଟେ ମୁର୍ଦ୍ଦାରଟାକୁ ଘୋଷାରି ଘୋଷାରି ନେଇ ବାବାଜିଙ୍କ ଭିତରେ ଶୁଆଇଦେଇ ଆସିଲା ।

ରାତି ପାହିଲା, ବାବାଜି ସବୁ ଉଠିଲେ । ଉଠି ଦେଖନ୍ତି ତ ତାଙ୍କ ଭିତରେ ଜଣେ କିଏ ମରି ଶୋଇଚି । ତାକୁ ଦାହ ନ କରିବେ କେମିତି ? ନ କଲେ ତ ଅଧର୍ମ ହେବ; ତେଣୁ ପାଞ୍ଚ ସାତ ଜଣ ବାବାଜି ମୁର୍ଦ୍ଦାରକୁ କୋକେଇରେ କାନ୍ଧେଇ ମଶାଣିକୁ ନେଲେ ।

ମୁର୍ଦ୍ଦାର ନେଲାବେଳେ ତ ମଡ଼ାସାଙ୍ଗୀ 'ରାମନାମ ସତ୍ୟ ହେ' ବୋଲି ଡାକ ମାରିମାରି ଯାଉଥା'ନ୍ତି, ସେ ସ୍ତ୍ରୀ ଲୋକଟି 'ରାମ ନାମ ସତ୍ୟ ହେ' ଏ ଡାକ ଶୁଣି ମୁର୍ଦ୍ଦାରକୁ ଚାହିଁ ଦେଇ କହିଲା –

କି ହଉ ହଉ କି ହୋଇଲା,
କା ପାଇଁ ରଖିଲି କିଏ ଖାଇଲା,
କାହାର ହରିଣୀ, କେ ନେଇ ରାନ୍ଧେ,
ପରପୁଅ ଲାଗି ଯୋଗିଆ କାନ୍ଦେ ।

ସତ କଥା, ସ୍ୱାମୀର ବିଷପିଠା ଖାଇଲା ପରପୁରୁଷ । ମିରିଗ ମାଇଲା ଜଣେ, ଖାଇଲା ଅନ୍ୟ ଜଣେ । ଯେ ମଣିଷ ମାଇଲା, ତା'ର ନାମଗନ୍ଧ ନାହିଁ । ଶେଷରେ ମୁର୍ଦ୍ଦାର ପୋଡ଼ିଲେ ବାବାଜି ।

ସଂସାରରେ ଏହିପରି ଉଣ୍ଡାମି ବହୁତ ଘଟେ ।



# ମାଂ ବିଦ୍ଧି ଯମଦୂତଙ୍କଂ

ଜଣେ ବିଧବା ଯୁବତୀ ଥିଲା । ତା'ର ଗୋଟିଏ ମାତ୍ର ପୁଅ । ତା'ଛଡ଼ା ତା'ର ଆଉ କେହି ନ ଥିଲେ । ପୁଅ ପିଲା ନୁହେଁ, ଭେଣ୍ଡା । ପୁଣି ପଣ୍ଡିତ ନୁହେଁ, ଅଙ୍କ ପାଠୁଆ । କେବେହେଲେ କୁଟାଖିଅର ଦି'ଖଣ୍ଡ କରେ ନାହିଁ । ସବୁବେଳେ ବଜାରିଙ୍କ ମେଳରେ ହେଁହେଁ, ଫେଁଫେଁରେ ଦିନ କଟାଏ । କେବଳ ଖାଇଲା – ବେଳକୁ ଘରକୁ ଆସେ । ଦିନେ ଦିନେ ଘରେ ଶୁଏ । ନ ହେଲେ ଆଠକାଳି ବାରମାସି ମା'ଟି ସବୁବେଳେ ଏକୁଟିଆ ରହେ ।

ଦିନେ ଜଣେ ବାବାଜି ଭିକ୍ଷା କରିବାକୁ ଆସିଲେ । ସେ ବିଧବା ଘରେ ଯେତେବେଳେ ଭିକ ମାଗିଲେ, ଭିକ ଦେଲାବେଳେ ବାବାଜିଙ୍କର ସେ ବିଧବା ଉପରେ ନଜର ପଡ଼ିଗଲା । ସେତିକିରେ ବାବାଜି ତା' ଉପରେ ଲୋଭେଇଗଲେ । ସେ ଆଉ ଭିକ ନେବାକୁ ତରତର ନ ହୋଇ ସେ ବିଧବା ସାଙ୍ଗରେ ବହୁତ ତତ୍ତ୍ୱକଥା କଥାବାର୍ତ୍ତା ହେଲେ । ବିଧବା ବାବାଜି କଥାରେ ଭୁଲିଯାଇ ତାଙ୍କୁ ଗୁରୁ କରିବାକୁ କହିଲା । ଏବେ ମଲୁ ଯାହା ଖୋଜୁଥିଲା ବଇଦ ସେଇଯା କହିଦେଲା । ବାବାଜି ଭେଖ ଦେବାକୁ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ଭେଖ ନେବା ପାଇଁ ଦିନବାର ଠିକଣା ହେଲା । ବାବାଜି ଆଡ଼ମ୍ବରରେ ପୂଜା କରି ମନ୍ତ୍ର ଦେଲେ । ଦୀକ୍ଷା ଦେବା ପରେ, ବିଧବା ବାବାଜିଙ୍କର ଶିଷ୍ୟ ହେଲା । ଶିଷ୍ୟ ଅତି ଭକ୍ତିରେ ଗୁରୁଙ୍କର ଖାଇବା ଶୋଇବା ସବୁ ବୁଝିଲା । ଏମିତି ହେବାରୁ ବାବାଜିଙ୍କର ଆଉ କୁଆଡ଼େ ଯିବା ଦରକାର ହେଲା ନାହିଁ । ବାବାଜି ଖାଇପିଇ ଚିକଣଚାକଣ ହୋଇଗଲେ । ସେ ସେଠାରେ ରାଜଭୋଗରେ ରହିଲେ ।

ବିଧବାର ପୁଅ ଦେଖିଲା – ଏ ତ ବାବାଜି ଲୋକ, ପୁଣି ମା'ର ଗୁରୁ । ଏଥିରେ ଭାବିବାର କଥା କଅଣ ଅଛି ? ତେଣୁ ସେ କୌଣସି ଆଶଙ୍କା ନ ରଖି ତା' ବେଳରେ ଆସି ମୁଠାଏ ଖାଇଦେଇ ଯୁଆଡ଼େ ଇଚ୍ଛା ସେଆଡ଼େ ଚାଲିଯାଏ ।

ବାବାଜି କିଛି ଦିନ ଶିଷ୍ୟା ଘରେ ରହିବାରେ ସେ ଘରର ହାଲ ହଲକତ ବୁଝିବାରେ କିଛି ବାକି ରହିଲା ନାହିଁ । ଦେଖିଲେ ଯେ ଏଠାରେ ବାଧାବିଘ୍ନ କିଛିନାହିଁ । ସବୁ କାମ ନିରାପଦରେ ଫତେ ହୋଇପାରିବ । ଏହି ବିଶ୍ୱାସ ହେବାରୁ ଦିନେ ଶିଷ୍ୟାକୁ ଡାକି କହିଲେ – ଦେଖ୍ ଖାଲି ଦୀକ୍ଷା ନେଲେ ତ ହେବ ନାହିଁ, ତାକୁ ଚାହିଁ ସାଧନା କରିବା ଦରକାର ।

ଶିଷ୍ୟା କହିଲା – ଆପଣ ଯେଉଁ ସାଧନା କହିବେ, ମୁଁ କ'ଣ ତା କରିବାକୁ ନାରାଜ ଅଛି ?

ଏଥିରେ ବାବାଜିଙ୍କର ମନ ଖୁସି ହୋଇଗଲା । କହିଲେ – ପ୍ରଥମେ ଗୁରୁଙ୍କର ସେବା ଦରକାର । ଗୁରୁ ସନ୍ତୁଷ୍ଟ ହୋଇଗଲେ ସାଧନାର ବାଟ ଆପେ ଆପେ ଫିଟିଯିବ । ଶିଷ୍ୟା ସେଥିରେ ରାଜି ହେବାରୁ ଗୁରୁ ଯେତେବେଳେ ଯାହା କହିଲେ, ଶିଷ୍ୟା ତାହା ସବୁ ପାଳିଲେ । ଏପରି ହେବାରୁ ଗୁରୁଙ୍କର ଭୋଗରେ ଆଉ ବାକି କିଛି ରହିଲା ନାହିଁ । ଶିଷ୍ୟା ତ ଯୁବତୀ, ଗୁରୁଙ୍କର ମଧ ଚୁଙ୍ଗା ବୟସ । ତେଣୁ ରାତି ଦିନ ଗୁରୁସେବା ଚାଲିଲା ।

ସେବା ଏତେ ହେଲା ଯେ ଦାଣ୍ଡରେ ଲୋକେ ବାସନା ବାରି ଚୁପ୍‌ଚାପ୍ ହେଲେ । ପୁଅ ମନ ମଧ୍ୟରେ ଆଶଙ୍କା ହେଲା । କଥାଟା ସତ କି ମିଛ ଜାଣିବା ପାଇଁ ପୁଅ ଦିନେ ପରୀକ୍ଷା କରିବାକୁ ବସିଲା । ସେ ଦିନେ ସଞ୍ଜ ଲାଗୁଲାଗୁ ଘରକୁ ଆସି ମା'କୁ କହିଲା – ମା' ମତେ ବେଗେ ଗଣ୍ଡେ ଖାଇବାକୁ ଦେଲେ ମୁଁ ଯାତ୍ରା ଦେଖିଯିବି । ଏହା ଶୁଣି ମା' ମନେ ମନେ ଖୁସି ହେଲା । କାହିଁକି ନା, ପୁଅ ଯେତେ ଶୀଘ୍ର ଯାଏ, ମା'ର ତେତେ ଭଲ । ବାବାଜି ମଧ ଖୁସି ହୋଇ କହିଲେ – ହଁ, ପିଲାଟା ଯାତ୍ରା ଦେଖିଯିବ, ଆଉ ସବୁ କାମ ନ କରି ଆଗ ତା' ଖାଇବା କଥା ବୁଝ ।

ମା ଆଖି ପିଛୁଳାକେ ରନ୍ଧାବଢ଼ା କରି ପୁଅକୁ ଖାଇବାକୁ ଦେଲେ । ସେତେବେଳକୁ ରାତି ହେଲାଣି ଦି'ଘଡ଼ି । ପୁଅ ଭୋଜନଟି ସାରି ମା' ମୁଁ ଯାଉଚି ବୋଲି କହି ମା' ଶୋଇବା ଘରେ ଖଟତଳେ ଠେଙ୍ଗାଟିଏ ପାଖରେ ରଖି ଲୁଚିକରି ରହିଲା । ଏ କଥା ମା' ଜାଣନ୍ତି ନାହିଁ, କି, ବାବାଜି ଜାଣନ୍ତି ନାହିଁ । ପୁଅ ଦାଣ୍ଡକୁ ଗଲା ବୋଲି ତାଙ୍କର ପୂରା ବିଶ୍ୱାସ ।

ଗୁରୁ ଏବଂ ଶିଷ୍ୟା ଦିହେଁ ଚିକ୍‌କଣ କରି ଖିଆପିଆ ସାରି ଶୋଇବାଘରକୁ ଶୋଇବାକୁ ଗଲେ । ଦିହିଁଙ୍କ ଭିତରେ ଆଗ ବହୁତ ହସ, ରସ, କୌତୁକ ଲାଗିଲା । ପୁଅ ଖଟତଳେ ରହି ଏସବୁ ପାଲା ଦେଖି ରାଗରେ ଗୋଟାକ ସାତଟା ହେଲାଣି । ସେତିକିବେଳକୁ ପୁଣି ବାବାଜିଙ୍କର ସେବା ଆରମ୍ଭ ହେଲା । ବାବାଜି ଭୋଳ ହୋଇ କହିଲେ –

ଗୃହଂ ବୃନ୍ଦାବନଂ ବିଦ୍ଧି,<br>
ମାଂ ବିଦ୍ଧି ଯଦୁନନ୍ଦନଂ ।<br>
ଆତ୍ମାନଂ ରାଧିକାଂ ବିଦ୍ଧି ।

ଅର୍ଥାତ୍ ଘରକୁ ବୃନ୍ଦାବନ ବୋଲି ଜାଣ । ମୋତେ ଯଦୁନନ୍ଦନ କି ଶ୍ରୀକୃଷ୍ଣ ବୋଲି ଏବଂ ନିଜକୁ ରାଧିକା ବୋଲି ବିଚାର । ଗୁରୁ ଏହି ତିନିପାଦ କହିଦେବା ସାଙ୍ଗେ ସାଙ୍ଗେ ପୁଅ ସମ୍ଭାଳି ହୋଇ ନ ପାରି ଖଟତଳୁ ଭୁସ୍‌କିନା ବାହାରି ତମ୍ପପରି ଗର୍ଜନ କରି 'ମାଂ ବିଦ୍ଧି ଯମଦୂତକଂ' ଅର୍ଥାତ ମୋତେ ଯମଦୂତ ବୋଲି ଜାଣ କହି ଗୁରୁଙ୍କ ବ୍ରହ୍ମତାଳୁରେ ତ ଠେଙ୍ଗାରେ ନିର୍ଦ୍ଧୁମ୍ ପାହାରଟିଏ ଦେଇଛି, ସେତିକିରେ ଗୁରୁ ନାରାୟଣ ପାଇଲେ । ମା' ପ୍ରାଣ ବିକଳରେ କୁଆଡ଼େ ଚମ୍ପଟ କଲା ।

ଏତିକିରେ ବୃନ୍ଦାବନ-ଲୀଳା ଶେଷ ।



# ଆଳୁଦୋଷ

ଜଣେ ବାବୁଙ୍କର ଚାକର ନ ଥିଲା । ସେ ବଡ଼ ହଇରାଣ ହେଉଥିଲେ । କେତେ ଖୋଜିଲେଣି, ଚାକରଟିଏ ପାଇନାହାନ୍ତି । ଦିନେ ଦୈବାତ୍ ଗୋଟିଏ ଭଣ୍ଡାରି ଟୋକା ଆସି ଜୁଟିଲା । ବାବୁ ତାକୁ ପାଇ ଖୁସି ହୋଇ ତାକୁ ଚାକିରି ରହିବା କଥା ପଚାରିଲେ । ସେ ଟୋକା କହିଲା – ମୁଁ ଚାକିରି ରହିବି ଯେ, ମୋର ଟିକିଏ ଆଳୁଦୋଷ ଅଛି । ତା' ଯେବେ ନ ଧରିବେ ତେବେ ରହିବି ।

ବାବୁ ଶୁଣି କହିଲେ – ଆବେ ଆଳୁଦୋଷ କ'ଣ ?

ବାରିକ ଟୋକା କହିଲା – ଆଜ୍ଞା, ମୋର ତ ସେତକ ଅଛି। ଲୁଚାଇବି କାହିଁକି ?

ବାବୁ ତ ଚାକର ନ ପାଇ ବ୍ୟସ୍ତ ହେଉଥିଲେ, ଆଳୁଦୋଷ କ'ଣ ଚୋରି ଡକାୟତି ତ ନୁହେଁ । ସେ ଆଉ କିଛି ନ ବୁଝି କହିଲେ – ହଉ ହେଲା ତୁ ଆଗ ରହିଯା, ଆଳୁଦୋଷ କଥା ପରେ ବୁଝିବା । ଦରମାପତ୍ର ଛିଣ୍ଡିଲା । ଚାକର ରହିଲା । ବାବୁ ଚାକର ଚିନ୍ତାରୁ ଖଲାସ ପାଇଲେ । ନୂଆ ଚାକର, ପୁଣି ଟୋକା ଲୋକ। ଗୁଡ଼ାଏ କାମ ଦେଲେ ବିଗିଡ଼ିଯିବ ଭାବି ଦୁଇ ଚାରି ଦିନ ସେ ଯେତିକି ପାରିଲା, ସେତିକି କଲା । କେହି କିଛି କହିଲେ ନାହିଁ । ବିଚରା କୁଣିଆ ଭଳି ଭୋଜନମାରି ଦୁଇଚାରି ଦିନ ବେଶ୍ ମଜାରେ ରହିଲା ।

# କୌତୁକ କୁଞ୍ଜ

ଦିନେ ରାତିରେ ବଜାରରୁ ଘିଅ କିଣି ଆଣିବାକୁ ବାବୁ ତାକୁ କହିଲେ । କହିଲା – ଆଜ୍ଞା, ଅନ୍ଧାର ରାତି, ବାଟରେ କୁକୁର ବୁଲୁଛନ୍ତି ଗଣ୍ଡା ଗଣ୍ଡା । ମୁଁ ପୁଣି ମହା ଭୟାଳୁ । ଏଥିରେ କେମିତି ଯିବି ? ରାତିରେ ଯିବା ଆସିବା ମୋ ଦେଇ ହୋଇପାରିବ ନାହିଁ । ଏହା ଶୁଣି ବାବୁ ବାଧହୋଇ କହିଲେ – ହଉ ତେବେ; ସକାଳେ ଆଣିବୁ ।

ଆଉ ଦିନେ ରାତିରେ ହଠାତ୍ ବାବୁଙ୍କର କଟକ ଯିବାକୁ ପଡ଼ିଲା । ସେ ଚାକରକୁ କହିଲେ – ଆରେ ହେ, ମୁଁ ଗଲାବେଳକୁ ପାନଫାନ ଭାଙ୍ଗି ଜିନିଷପତ୍ର ସଜାଡ଼ି ରଖିବୁ । ସେ କହିଲା – ଆଜ୍ଞା ମୁଁ ବଡ଼ ନିଦ୍ରାଳୁ, ରାତିରେ ମୋ ଦେହି ଏସବୁ କଥା ହୋଇପାରିବ ନାହିଁ । ବାବୁ କହିଲେ – ହଉ, ଆଚ୍ଛା ଆମେ କରିଦେବା; ଆଉ କ'ଣ କରାଯାଏ ।

ଦିନେ ଜଣେ ଭଦ୍ରଲୋକ ବାବୁଙ୍କ ଘରକୁ ଆସିଲେ । ବାବୁ ଚାକରକୁ ଡାକି କହିଲେ – ଏ ଯେଉଁ ଭଦ୍ରଲୋକ ଆସିଛନ୍ତି, ତୁ ତାଙ୍କ ପାଖରେ ରହି ତାଙ୍କର ଯାହା ଦରକାର, ସେସବୁ କରିଦେବୁ । ସେ କହିଲା ଆଜ୍ଞା ମୁଁ ବଡ଼ ଭୋଖାଳୁ । ଏତେ କାମ ମୁଁ ପାରିବି ନାହିଁ । ବାବୁ କହିଲେ – ଆଚ୍ଛା, ଚାକରାଣୀକି କହିବା, ସେସବୁ କରିଦେବ ।

ବାବୁଙ୍କର କେତେଗୁଡ଼ାଏ ସଉକିନି ଜିନିଷ ଥିଲା । ଚାକର ତା ଭିତରୁ କେତେ ଗୁଡ଼ାଏ ଜିନିଷ ୟାକୁ ତାକୁ ବାଣ୍ଟିଦେଲା । କେତେ ଦିନ ପରେ ବାବୁ ସେ ଜିନିଷ ଯିବା କଥା ଜାଣିପାରି ପଚାରିଲେ – କିରେ, ଆମକୁ ନ ପଚାରି ଏସବୁ ଜିନିଷ କେମିତି ବାଣ୍ଟିଦେଲୁ ? ସେ କହିଲା – ଆଜ୍ଞା, ମୁଁ ଟିକିଏ ଦୟାଳୁ, କାହାରି ଦୁଃଖ ସମ୍ଭାଳିପାରେ ନାହିଁ । ସେଇଥିରୁ ତ ଦେଇ ପକାଇଛି, ଆଉ କରିବି କ'ଣ ? ବାବୁ କହିଲେ – ତୁ କ'ଣ ଇମିତି, କରୁଥିବୁ, ମୁଁ ସହୁଥିବି । ଏଥିକି ସାବଧାନ ରହ ।

ସେ କହିଲା – ଆଜ୍ଞା, ମୁଁ ତ ମୂଳରୁ କହୁଛି ମୋର ଟିକିଏ ଆଳୁଦୋଷ ଅଛି । ଆପଣ ରାଗିଲେ ମୁଁ କ'ଣ କରିବି ? ବାବୁ ଆଉ କିଛି ନ କହି ତୁନି ହେଲେ । ବାବୁ ଚାକରର ଇମିତି ବହୁତ ଆଳୁଦୋଷ ସହିଲେଣି କେବଳ ଚାକର ପଳାଇବ ବୋଲି ।

ଦିନେ ବାବୁ କଚେରି ଯିବାପରେ ସେ ତାଙ୍କର ଯୁବତୀ ଝିଅକୁ କ'ଣ ରହସ୍ୟ କଥା କହିଲା । ଝିଅ ସେଥିରେ ରାଗିମାଗି ବାପା ଆସିବାରୁ ସବୁକଥା କହିଲା । ବାବୁ ଝିଅ କଥା ଶୁଣି ରାଗରେ ଜଳିଯାଇ ଚାକରକୁ ଡାକି ପଚାରିଲେ – କିବେ, ତୁ ଆଜି ଝିଅ ସାଆନ୍ତାଣୀଙ୍କୁ ଇମିତି ଖରାପ କଥା କାହିଁକି କହିଲୁ ?

ସେ କହିଲା – ଆଜ୍ଞା, ମୁଁ ଟିକିଏ ରସାଳୁ । ସେ ଆଲୁଦୋଷ ତ ଅଛି, ମୁଁ ଆଉ କଣ କରିବି ?

ବାବୁ ଦେଖିଲେ ଯେ ଦିନକୁ ଦିନ ଏହାର ଆଲୁଦୋଷ ବଢ଼ିଲା; ଆଉ ସହି ହେବନାହିଁ । ସେ ଆଉ ବିଳମ୍ବ ନ କରି ସାଙ୍ଗେ ସାଙ୍ଗେ ଉତ୍ତମ ମଧ୍ୟମ ଦେଇ ତାକୁ ବାହାର କରିଦେଲେ । ବିଚରା ଦେହରେ ମୁଣ୍ଡରେ ପାଇ କାନମୁଣ୍ଡ ଆଉଁସି ଆଉଁସି କାନ୍ଦି କାନ୍ଦି ବାହାରିଗଲା ।

ଆଲୁଦୋଷରୁ ଶେଷକୁ ଯା ନ ହୋଇ ଆଉ କ'ଣ ହୁଅନ୍ତା ?



# ଯବ୍, ଯାଉଁ, ତବ୍ ବାଗ୍ ନ ଯାଉଁ

ଭାଲୁଗୁଡ଼ାକ ପାଚିଲା ଆମ୍ବ ଖାଇବାକୁ ବାଇ । ଆମ୍ବଦିନରେ ଦିନେ ରାତିରେ ଗୋଟିଏ ଭାଲୁ ଗୋଟେ ତୋଟାକୁ ଗଲା । କେତେ ଆମ୍ବ ଝଡ଼ିକରି ରଣିବିଛଣି ହୋଇପଡ଼ିଥାଏ । ଭାଲୁଟା ବୁଲି ବୁଲି ଗୁଡ଼ିଏ ଆମ୍ବ ଖାଇଲା । ଗୋଟିଏ ଆମ୍ବରେ ଗୋଟିଏ ବିଛା କିମିତି ପଶିଯାଇଥିଲା । ଭାଲୁ ଦୈବାତ୍ ସେ ଆମ୍ବଟା ଖାଉ ଖାଉ ବିଛାଟା ଜୀବନ ବିକଳରେ ଭାଲୁ ଜିଭକୁ ଗୁଟ୍‌କିନା କାମୁଡ଼ିଦେଲା । ସେଥିରେ ଜିଭରୁ ରକ୍ତ ବାହାରିଲା । ଜିଭଟା ହାଉ ହାଉ ହୋଇ ପୋଡ଼ିଲା । ଭାଲୁ ସେଥିରେ କଳବଳ ହୋଇ ପ୍ରତିଜ୍ଞା କଲା –

"ଆଉ ବାଗ୍ ନ ଯାଉଁ ।"

ବାଗ୍ ଯିବ ନାହିଁ ବୋଲି ତ ପ୍ରତିଜ୍ଞା କରିଚି, ପୁଣି କେଉଁ ମୁହଁରେ ଯିବ ? ଖାଲି ବିଲ-ପଡ଼ିଆରେ ବୁଲିଲା । ବିଲପଡ଼ିଆରେ କେଉଁ ଖାଇବା ଜିନିଷ ଅଛି ଯେ ଖାଇବ ? ଭୋକଦାଉରେ ସେ ପ୍ରତିଜ୍ଞା ଭାଙ୍ଗି ପୁଣି ନୂଆ ପ୍ରତିଜ୍ଞା କରି କହିଲା –

ଯବ୍ ବାଗ୍ ଯାଉଁ ତବ୍ ଆମ୍ବ ନ ଖାଉଁ ।'

ଏଥର ପ୍ରତିଜ୍ଞା ଟିକିଏ ତଳକୁ ଖସିଲା । ଆଳେଇ ପାଳେଇ ହୋଇ ବଗିଚାଟାଯାକ ବୁଲିଲା । ସେ ତ ଖାଲି ଆମ୍ବ ତୋଟାଟେ । ଆଉ କେଉଁ ଫୁଲଫଳ ଅଛି ଯେ ଆମ୍ବ ନ ଖାଇ ତା ଖାଇବ ? ଆମ୍ବ ପୁଣି ରଣିବିଛଣି ହୋଇ ତୋଟାଯାକ ପଡ଼ିଛି । ଏଣେ ଭାଲୁକୁ ଟାଇଁ ଟାଇଁ ଭୋକ କରୁଛି । ବିଚରା କ'ଣ କରିବ । ସେଉଠୁ ଆଗ ପ୍ରତିଜ୍ଞା ଭାଙ୍ଗି ପୁଣି ପ୍ରତିଜ୍ଞା କରି କହିଲା –

ଯବ୍, ଖାଉଁ, ଛତର ଛାୟାଁ,
କବ୍ ନ ଖାଉଁ ଲତପତାୟାଁ ।

ଏ ପ୍ରତିଜ୍ଞା ଅନୁସାରେ ଯେଉଁ ଆମ୍ବସବୁ ପଡ଼ି ଛତରଛାଉଳି ହୋଇଥିଲା, ତାକୁ ସବୁ ଖାଇଲା, ଆଉ ଲତପତ ଆମ୍ବ ଖାଇଲା ନାହିଁ । ଛତରଛାଉଳି ଆମ୍ବ ଅବା କେତେ ପାଇବ ? ପଛକୁ ସବୁ ଭୁଲିଯାଇ ଛତରଛାୟା, ଲତପତାୟା ସବୁ ଖାଇଲା ।

ଲୋଭ ଛାଡ଼ିବା ସହଜ କଥା ନୁହେଁ ।



# ହେ, ହେ, ମୋ ରାଣଟି, ଖଣ୍ଡେହେଲେ ପେଟିମାଛ ଖାଅ

ଗୋଟିଏ ଘରେ ବୁଢ଼ାବୁଢ଼ୀ ଦି'ଜଣ ଥିଲେ । ପିଲାପିଚିକା କେହି ନ ଥିଲେ । ବୁଢ଼ା ବୁଢ଼ୀକି ଭାରି ଭଲପାଏ । ଦିନେ ବୁଢ଼ା ହାଟବଜାର ବୁଲି ବୁଲି ଆସିଲା । ସେ କେଉଁଠାରେ ଗୋଟିଏ ମାଛ ମୂଲେଇଥିଲା । ଭାଉ ବେଶି ହେବାରୁ ଆଣିଲା ନାହିଁ । ମାଛ ନ ଆଣିଲା ସିନା; ସେ ମାଛ ତା' ମନରୁ ପାଶୋର ଯାଉ ନ ଥାଏ ।

ବୁଢ଼ା ଘରେ ପହଞ୍ଚିଲା । ବଜାରରୁ ଯାହା ଯିମିତି ଆଣିଥିଲା, ତା'ସବୁ ବୁଢ଼ୀକି ଦେଲା । ବୁଢ଼ୀ ସେସବୁ ଧରି ରନ୍ଧାବଢ଼ା କରିବାକୁ ବାହାରିଲା । ବୁଢ଼ାର ତ ମାଛ କଥା ମନରେ କୁଟିହଉଚି । ସେଇଥିରୁ ବୁଢ଼ୀକି ଡାକି କହିଲା, କ'ଣ ପଳାଇଲ କି ? ଶୁଣ, ଶୁଣ । ଆଜି ହାଟକୁ ଗୁଡ଼ିଏ ଭଲ ମାଛ ଆସିଥିଲା । ତାକୁ ଦେଖି ମୋ ମନ ରବୈଖବୈ ହେଲା । ମାଛପସରା ପାଖକୁ ଗଲି, ବାଛିକରି ଖଣ୍ଡେ ମୁଲେଇଲି । ସେ କହିଲା, ତିନି ଅଣା, ମୁଁ କହିଲି ଦି'ଅଣା । ବହୁତ ଭିଡ଼ାଓଟରା ହେଲା । ସେ ରାଣ୍ଡି ଜମା ତଳକୁ ଖସିଲା ନାହିଁ, ପଇସାଟାଏ ସୁଦ୍ଧା କାଟିଲା ନାହିଁ । ଭାଉ ନ ପଟିବାରୁ ଛାଡ଼ିଦେଇ ଆସିଲି । ଛାଡ଼ି ଆସିଲି ସିନା, ମନଟା ବଡ଼ ସନ୍ତର ପନ୍ତର ହେଉଚି । ମାଛଖଣ୍ଡ ନଈମାଛ, ନିଶ୍ଚେ ଚିକଣ ଲାଗିଥା'ନ୍ତା । ଏବେ ମାଛଖଣ୍ଡକ ଆଖିକି ଦିଶିଯାଉଚି । ତା' କଥାକୁ ମୋ କଥା ଗୋଟେ ନୁହେଁ, ଯୋଡ଼େ ନୁହେଁ, ଚାରିପଇସା ଛାଡ଼ିଲା । ନୋହିଲେ କ'ଣ ଆଣି ନ ଥା'ନ୍ତି ?

ବୁଢ଼ୀ ଏହା ଶୁଣି ସ୍ନେହରେ ତରଳିଯାଇ କହିଲା – ଯା ନାଁ ଗୋଟେ କଥା ମାଛଖଣ୍ଡ ତ ଆଣିଥା'ନ୍ତ, ମୁଁ ରାନ୍ଧିବାଢ଼ି ଦେଇଥା'ନ୍ତି, ଖାଇଥା'ନ୍ତ ।

ବୁଢ଼ା କହିଲା – ମୁଁ କ'ଣ ଏକୁଟିଆ ଖାଇଥା'ନ୍ତି ? ତୁମକୁ ନ ଦେଇ ମୋ ପେଟକୁ ଯାଆନ୍ତା ?

ବୁଢ଼ୀ କହିଲା – ତୁମେ ଦେଲେ କ'ଣ ମୋ ପେଟକୁ ଯା'ନ୍ତା ? ତୁମେ ଏତିକି ଶରଧାରେ ବୋହି ବୋହି ଆଣିବ, ମୁଁ କ'ଣ ଖାଇବି ମ ?

ବୁଢ଼ା କହିଲା – ଉହୁଁ, ଯେ ଗୋଟେ କଥା ? ତୁମେ କାଟିବ, କେଳେଇବ, ଧୋଇବ, ବାଟିବ, ରାନ୍ଧିବ, ବାଢ଼ିବ, ଏତେ କଥା କରିବ, କିଛି ଖାଇବ ନାହିଁ ?

ବୁଢ଼ୀ କହିଲା – ହଁମ, ଏତେ କଥା କଲେ କ'ଣ ହେଲା ? ତୁମେ ଖାଇଲେ କ'ଣ ମୋ ପେଟକୁ ଗଲା ନାହିଁ ?

ବୁଢ଼ା କହିଲା – ନା, ନା ତୁମକୁ ମୋ ରାଣ ଅଛି । ତୁମେ କିଛି ନ ଖାଇଲେ ମୋ ମନରେ ଦୁଃଖ ରହିଯିବ ।

ବୁଢ଼ୀ କହିଲା – ହଉ, ହେଲା ଯେବେ ଏତେ ରାଣ ପକାଉଚ, ତେବେ ଲାଞ୍ଜ ଟିକିଏ ଖାଇଦେବି ।

ବୁଢ଼ା କହିଲା – ଯା ନାଁ ଗୋଟେ କଥା । ମୁଁ ଏଡ଼େ ଶରଧାରେ ଆଣିବି । ତୁମେ ଖାଇବ ଲାଞ୍ଜ ଟିକିଏ ? ଏକଥା କାହାକୁ ଭଲ ଲାଗିବ ?

ବୁଢ଼ୀ କହିଲା – ହଉ, ଏତେ ମନଦୁଃଖ କରୁଚ ଯେବେ ମୁଣ୍ଡ ଟିକିଏ ଖାଇବି ।

ବୁଢ଼ା କହିଲା – ନାହିଁ, ନାହିଁ ମୋ ରାଣଟି, ତୁମେ ପେଟମାଛ ଖଣ୍ଡେ ଖାଅ ।

ବୁଢ଼ୀ କହିଲା – ଆଉ ତେବେ, କ'ଣ ନ ହେଲା କି ମୁଁ ଖାଇବି ପେଟମାଛ । ଶୁଣିଲେ ଲୋକ ହସିବେ, ତୁମେ ଖାଅ ପେଟ; ମୋର ମୁଣ୍ଡ ଟିକିଏ ହେଲେ ହେଲା ।

ବୁଢ଼ା ସ୍ନେହରେ ଏତେ ବଳାଇଲେ ହେଁ ବୁଢ଼ୀ ପେଟମାଛ ଖାଇବାକୁ ନ ମଙ୍ଗିବାରୁ ବୁଢ଼ା ରାଗିଯାଇ କହିଲା – ହଇଲୋ ରାଣ୍ଡି । ମୁଁ ଏତେ ରାଣ

ପକେଇଲି, ଏକା ଜିଦ୍ ଧରିଛୁ ପେଟମାଛ ଖାଇବି ନାହିଁ; ଖାଇଲେ ଖାଇବି ଲାଞ୍ଜ, ନ ହେଲେ ମୁଣ୍ଡ ? ରାଗରେ ଏହା କହି ବୁଢ଼ା ମାଇଲା ଏକ ଗୋଇଠା ଯେ ବୁଢ଼ୀ ସେଇ ଗୋଇଠାରେ ଗଡ଼ି ଗଡ଼ି ଯାଇ ତଳେ ପଡ଼ି ଚେତା ବୁଡ଼ିଗଲା ।

ଆଉ ରୋଷେଇବାସ କିଏ କରିବ ? ସବୁ ବନ୍ଦ । ବୁଢ଼ା, ବୁଢ଼ୀର ନାକକାନ ଫୁଙ୍କି ରାତିଯାକ ସେବା କରିବାରେ ରାତି ପାହିଗଲା ।

ମାଛ ନ ଆସି ତ ଏ ଅବସ୍ଥା, ମାଛ ଆସିଥିଲେ ବୁଢ଼ୀ ବଞ୍ଚିଥାନ୍ତାଟିକି ?

ବୁଢ଼ାର ବୁଢ଼ୀଠେଇଁ କେଡ଼େ ସ୍ନେହ ?



# ଦୁଇ ଅଳସୁଆ

**ଗୋ**ଟିଏ ସଡ଼କର ଗୋଟିଏ କଡ଼ରେ ଦୁଇଟା ଅଳସୁଆ ପଡ଼ି ରହିଥା'ନ୍ତି । ଜଣେ ଲୋକ ବୋଝେ ପାଚିଲା ଆମ୍ବ ନେଇ ସେବାଟେ ଯାଉଥିଲା । ଗୋଟେ ଅଳସୁଆ ଦୈବାତ୍ ଆଖି ଫିଟାଇ ଚାହିଁଦେଲାବେଳକୁ ଦେଖିଲା – ଗୋଟେ ଆମ୍ବବୋଝ ଯାଉଚି । ଆମ୍ବ ଦେଖି ଖାଇବାକୁ ତା' ମନ ଲାଳେଇଲା । ମନ ସିନା ହେଲା, ଉଠିକରି ବୋଝିଆ ପାଖକୁ ଯାଉଚି କିଏ ? ତେବେ ଏତକ କଲା ଯେ ସେହିଠାରେ ସେମିତି ପଡ଼ି ରହି ଆମ୍ବ ବୋଝିଆକୁ କହିଲା – ହେ ଭାଇ । ଏତେ ଆମ୍ବ ନଉଚ, ଗୋଟେ ହେଲେ ପକାଇ ଦେଇ ଯା'ମ । ବୋଝିଆ କହିଲା – ତୋଟାମାନଙ୍କରେ ତ ଆମ୍ବ ଗାଈ ଚରୁଛନ୍ତି, ଯାଉନାହୁଁ, ପେଟେ ଖାଇଦେଇ ଆସିବୁ ? ଗୋଟେ ମାଗୁଚୁ କିଆଁ ? ସେ କହିଲା – ଏତେ ବାଟ ଗଲେ ତ ? ଏତେ ଆମ୍ବ ନଉଚ, ଗୋଟେ ଦେଲେ କ'ଣ ସରିଯିବ ? ଦେ ଭାଇ, ଗୋଟେ ଦେ । ଏହିପରି ନକସ୍ତକ ହୋଇ ବହୁତ ପ୍ରାର୍ଥନା କଲା । ବୋଝିଆ ବାଧ ହୋଇ ବୋଝରୁ ଆମ୍ବଟେ କାଢ଼ି କହିଲା – ହଉ, ତେବେ ନେ । ସେ କହିଲା – ଦବୁଁ ଯେବେ ଟିକିଏ ପାଖକୁ ଆ । ଯିବା କଥା ହୋଇଥିଲେ ଆମେ ଆଣନ୍ତୁ ନାହିଁ କି ? ବୋଝିଆ କହିଲା – ଆମ୍ବ ଦେବି, ପୁଣି ପାଖକୁ ଯାଇ ଦେବି ? ସେ କହିଲା – ଯା କ'ଣ ହୁଏ ନାହିଁ ? ମୋ ଭାଇଟା ପରା । ଦି' ପାହୁଣ୍ଡ ଚାଲିଆସିଲେ କ'ଣ ଦିହଟା ସରିଯିବ ? ବୋଝିଆ ଯିବାକୁ ତରତର ହେଉଥାଏ । ସେ ଦେଖିଲା ଯେ ଯା ସଙ୍ଗେ କଥାବାର୍ତ୍ତା ନ କରି ଆମ୍ବଟିଏ ଦେଇ ଶୀଘ୍ର ଯିବା ଭଲ । ନ ହେଲେ ଡେରି ହେବ । ଯା ବିଚାରି ସେ ତା' ପାଖକୁ ଆମ୍ବ ଦେବାକୁ ଗଲା । କହିଲା – ହଉ, ତେବେ ନେ । ସେ କହିଲା – ଭାଇ । ଏତେ କଥା ତ କଲୁ । ଏବେ ମୁଁ ଆଁ କରୁଚି, ଆମ୍ବଟା ଟିକିଏ ମୋ ମୁହଁରେ ଚିପୁଡ଼ି ଦେ । ଏହା ଶୁଣି ବୋଝିଆ ବିରକ୍ତ ହୋଇ

କହିଲା – କେମନ୍ତ ? ଆମ୍ବ ମାଗିଲୁ, ଆମ୍ବ ଦେଲି । ପୁଣି ତୋ ମୁହଁରେ ଚିପୁଡ଼ି ଦେବି ? ତୋ ପରି କୋଢ଼ିକି ଆମ୍ବ ଦେବା ଉଚିତ୍ ନୁହେଁ । ପୁଣି କ'ଣ ଭାବି ତା' ମୁହଁରେ ଆମ୍ବଟା ଚିପୁଡ଼ିଦେଲା । ଏହା ଦେଖି ଆର ଅଳସୁଆ କହିଲା – ଭାଇ । କହନା, ଏ ଶଳାଟା ଭାରି ଅଳସୁଆ । ତା' କଥା ଶୁଣିଲେ ପରା ମୋର ରାଗ ହଉଚି । କ'ଣ କହିବି ? ହେଇଟି ଏଇଲାଗେ ପରା ଗୋଟେ କୁକୁର ମୋ ମୁହଁରେ ମୂତୁଚି, ଏ ଶଳାଟା ବଲବଲ କରି ଚାହିଁଚି, ଟିକିଏ ଛିକିଛିକି କରି ଦଉନାହିଁ । ଏ ଶଳା ଏଡ଼ିକି ଅଳସୁଆ । ଇମିତି ଅଳସୁଆକୁ ମୋଟେ ଆମ୍ବ ଦେବା ଉଚିତ୍ ନୁହେଁ । ଏହା ଶୁଣି ବୋଝିଆ କହିଲା – ସବୁ ବୁଝିଲି, ଏଇଟା ଏବେ ଅଳସୁଆ ? ଦେଖୁଚି – ତୋ ମୁହଁରେ କୁକୁର ମୂତୁଚି, ଛିକିଛିକି କରି ଦେଲା ନାହିଁ ? ନ କଲା ତ ନାହିଁ, ମୋର କ'ଣ କ୍ଷତି ହୋଇଗଲା ? କୁକୁର କ'ଣ ସବୁବେଳେ ମୁହଁରେ ମୂତୁଚି ? ତା' କଥା ଜଣାପଡ଼ିଲା । ଯା ଜାଣିଥିଲେ ଆମ୍ବଟା ଏଭଳି ଅଳସୁଆକୁ ନ ଦେଇ ତୋରି ଭଳି ଚଞ୍ଚଳିଆକୁ ଦେଇଥା'ନ୍ତି । ଏହା କହି ତା ବାଟ ସେ ଧଇଲା ।

ଯାହା ମୁହଁରେ କୁକୁର ମୂତିଲା, ସେ ପୁଣି ଅଳସୁଆ ନୁହେଁ ? ପୃଥିବୀରେ ଇମିତି ଅଳସୁଆ ପୁଣି ଅଛନ୍ତି ?



# ପଣ୍ଡିଆଣୀ ଲୋ ମୋ କର୍ଣ୍ଣ ଗଲା

ଗୋଟିଏ ଗାଁ'ରେ ଜଣେ ଲୋକର ଗୋଟିଏ ଗାଈ ଥିଲା । ଗାଈଟି ବଡ଼ ଓଲିଆ । ପଘାରୁ ଫିଟିଲେ ତାକୁ ଆଉ ଧରେ କିଏ ? ରୋଜ ଯା ବାଡ଼ି, ତା' ବାଡ଼ି ଭାଙ୍ଗି ଖଦା କରେ । ତା' ଯୋଗୁଁ ପ୍ରତିଦିନ ବୋଲଣା ଶୁଣିବାକୁ ହୁଏ । ସନ୍ଧ୍ୟା ହେଲେ ଦି ଜଣ ତିନି ଜଣ ପଘା ପାଞ୍ଚଣ ଧରି ଗାଁ'ଟାଯାକ ନ ଖୋଜିଲେ ନ ଚଳେ । ଦିନେ ଦିନେ ମଧ୍ୟ ଦେଖା ଦର୍ଶନ ମିଳେନାହିଁ । ଇମିତି ଗାଇ ରଖି ଖାଲି ଦହଗଞ୍ଜ ହେବା କଥା । ସେ ଗାଈ ଯୋଗୁଁ ଘରବାଲା ବଡ଼ ଦିକ୍‌ଦାର ହେଲାଣି । ଦିନେ ସେହିପରି ବହୁତ ଖୋଜି ଖୋଜି ରାତି ପହରକୁ ଗାଈକି ବାନ୍ଧି ଘରକୁ ଆସିଲା । ସେଦିନ ତାକୁ ଏତେ କାଟିଥାଏ ଯେ, ଭାର୍ଯ୍ୟାକୁ କହିଲା – ଏ ଗାଈକି ରଖି ଆଉ ମଙ୍ଗଳ ନାହିଁ । ରାତି ପାହିଲେ ସକାଳେ ଯାହାକୁ ଦେଖିବି, ତାକୁ ନିଶ୍ଚେ ଦେଇଦେବି ।

ଘରବାଲା ଏକଥା କହିଲାବେଳେ ସେ ଗାଁ'ର ବାୟା ପଣ୍ଡା ସେ ବାଟ ଦେଇ ଯାଉଥିଲା । ସେ ଘରବାଲାର ଗାଈ ଦବା କଥା ଶୁଣି ତାକୁ ସତ ବିଚାରି ଘରକୁ ଯାଇ ପଣ୍ଡିଆଣୀକି କହିଲା – ବୁଝିଲୁ, କାଲି ସକାଳେ ଅଗା ଦାସ ତା' ଗାଈଟା ଯାହାକୁ ଇଚ୍ଛା ତାକୁ ଦେଇଦେବି ବୋଲି ପ୍ରତିଜ୍ଞା କରିଚି । ତୁ ଯେବେ କହିବୁ, ତେବେ ମୁଁ ଯାଇ ଗାଈଟି ଆଣନ୍ତି ।

ପଣ୍ଡିଆଣୀ କହିଲା – ଯା କ'ଣ ପଚାରୁଚ ହେ ? ଆମର ତ ଗାଈଟିଏ ନାହିଁ ବୋଲି ଦୁଧ ଟିକିଏ, ଦହି ଟିକିଏ ଦେଖିବାକୁ ସ୍ୱପ୍ନ । କିଛି ନ ହେଲେ ଗୋବର ଲଣ୍ଡେ ତ ମିଳିବ ? ଗୋଟେ ମାଗଣା ଦେବାକୁ ଯାଚୁଚି, ଲୋକ ଏହା ଛାଡ଼େ ?

ପଣ୍ଡା କହିଲା – ହଉ ଯେବେ ଆଣିବା, ତେବେ ତାକୁ ତ ଖୁଆଇ ପିଆଇ ଚଳାଇବୁଟିକି ?

ପଣ୍ଡିଆଣୀ କହିଲା – ସେଥିକି ତୁମେ ଭାବନା କର ନାହିଁ । ସେସବୁ କଥା ମତେ ଲାଗିଲା ।

ପଣ୍ଡା କହିଲା – ଆଲୋ । ଭଲ କଥା ମନେ ପଡ଼ିଲା । ଯେ ଗାଈ ଦେବ, ସେ ତ ପଘା ଦେବ ନାହିଁ । ପଘାଟିଏ ସିନା ଆମ ଘରୁ ନେଲେ ହେବ ? ଆମର ପଘା କାହିଁ ?

ପଣ୍ଡିଆଣୀ କହିଲା – କାହିଁକିମ । ପଘା ସିନା ନାହିଁ, ସେ କ'ଣ ବଳେଇବ ? ଆମ ଘରେ ତ ଗୁଡ଼େ ହାତକଟା ସୂତା ଅଛି । ମୁଁ ସେଥିରେ ପଘାଟିଏ ବଳି ଦେଇପାରିବି ନାହିଁ ? ଶିଳ ମହର୍ଗରେ କ'ଣ ବାହାଘର ରହିଯିବ ?

ପଣ୍ଡା କହିଲା – ତେବେ ପଘା କଥା ତତେ ଲାଗିଲା । ହୁଁ, ଆଉ ଗୋଟିଏ କଥା ମତେ ଟିକିଏ ରାତିରୁ ଉଠାଇଦେବୁ । ବଡ଼ି ଭୋରରୁ ନ ଗଲେ ଗାଈଟି ପୁଣି ଆଉ କିଏ ନେଇଯିବ ।

ପଣ୍ଡିଆଣୀ କହିଲା – ହଉ, ତୁମେ ନିଶ୍ଚିତ ହୁଅ । ମୁଁ ରାତି ନ ପାହୁଁ ଅନ୍ଧାର ଥାଇ ଉଠାଇଦେବି ।

ସତକୁ ସତ ରାତି ନ ପାହୁଣୁ ପଣ୍ଡିଆଣୀ ପଣ୍ଡାକୁ ଉଠାଇଦେଲା । ପଣ୍ଡା ମୁହଁ ନ ଧୋଇ ନୂଆସୂତା ପଘା ଧରି ଅଗା ଦାସ ଦୁଆରେ ହାଜର । ସେତେବେଳକୁ ଅଗା ଦାସ ଦୁଆର ଫିଟି ନ ଥାଏ । ପଣ୍ଡା ବସିରହିଲା । କେତେବେଳ ଉତ୍ତାରୁ ଅଗା ଦାସ ନିଦରୁ ଉଠି ମୁହଁ ଧୋଇବ ବୋଲି ପାଣି ଡାଲଟେ ଧରି ଦୁଆର ଫିଟାଇ ପିଣ୍ଡାକୁ ବାହାରି ପଡ଼ିବା ବେଳକୁ ଦେଖିଲା ବାୟା ପଣ୍ଡା ପଘାଟେ ଧରି ବସିଚି । ସେ ତାକୁ ଅଧୁଆ ମୁହଁରେ ଚାହିଁଦେଇ ବିରକ୍ତ ହୋଇ କହିଲା – କିଓ, ରାତି ନ ପାହୁ ତୁ କିଆଁ ଆସି ବସିଚୁ ?

ପଣ୍ଡା କହିଲା – ଗାଈ ନବାକୁ ଆସିଚି ପରା । ମୋର ତ ଗାଈ ନାହିଁ, ଗାଈଟି ମତେ ଦାନ କଲେ ତୁମର ବହୁତ ପୁଣ୍ୟ ହେବ ।

ଅଗା ଦାସ ରାଗିଯାଇ କହିଲା – କିଓ, ଗାଈ କ'ଣ ଦାନ କ'ଣ ? ସକାଳୁ ଆଜି ଗୁରୁବାରରେ ତୁ ଇମିତି କଥା କାହିଁକି କହୁଚୁ ?

ପଣ୍ଡା କହିଲା – ତୁମେ କହିଥିଲ ବୋଲି ଆସିଲି ନା, ନ ହେଲେ ମୁଁ କାହିଁକି ଆସିଥା'ନ୍ତି ?

ଅଗା ଦାସ ଏହା ଶୁଣି ରାଗିଯାଇ କହିଲା – ହଇବେ, ମୁଁ ତତେ କହିଥିଲି ତତେ ଗାଈ ଦେବି ବୋଲି ? ସେ କହିଲା – ମତେ କହି ନ ଥିଲ ଯେ, ରାତିରେ ତୁମ ଘରେ କହୁଥିଲ – ଏ ଗାଈକି ମୁଁ ପାରିବି ନାହିଁ, କାଲି ସକାଳେ ଯାହାକୁ ହେଲେ ଦେଇଦେବି । ମୁଁ ସେଇ କଥା ଶୁଣି ଆସିଛି ସିନା, ନ ହେଲେ ଆସନ୍ତି କିଆଁ ? ଅଗା ଦାସ କହିଲା – ଆବେ, ମୁଁ କାହାକୁ କ'ଣ କହିଲି, ତୋର କ'ଣ ଗଲା ? ଶଳା, ମୋ ପିଣ୍ଡାରୁ ଉଠୁଚୁଟିକି କହି ତା' କାନମୁଣ୍ଡାକୁ ଗୋଟିଏ ବ୍ରହ୍ମଜାବେଡ଼ା ବଜାଇଲା । ସେଇ ଗୋଟାକ ଜାବେଡ଼ାରେ ତା' ଗିରି ଭାଁ ଭାଁ ହୋଇଗଲା । ସେତିକିରେ ସେ ପଣ୍ଡା ପଣ୍ଡିଆଣୀ ଲୋ, ମୋ କର୍ଣ୍ଣ ଗଲା, କର୍ଣ୍ଣ ଗଲା ବୋଲି କହି କହି କାନମୁଣ୍ଡା ଆଉଁସି ଆଉଁସି ଘରକୁ ଗଲା । ପିଣ୍ଡା ପର୍ଯ୍ୟନ୍ତ ସେ ସେଇପରି ବୋବାଳି ଛାଡ଼ିଥାଏ ।

ପଣ୍ଡିଆଣୀ ଯେତେବେଳେ ଶୁଣିଲା – ଉଁ, ହା, ହୁଁ, ମୋ କର୍ଣ୍ଣ ଗଲା, ଦୁଆର ଫିଟା, ସେତେବେଳେ ସେ ବିଚାରିଲା – ଗାଈ ନାଁ କର୍ଣ୍ଣ ହୋଇଥିବ ଯେ ପଣ୍ଡା ତାକୁ ଆଣି ଦୁଆର ଫିଟାଇବାକୁ ଡାକୁଛନ୍ତି । ଯା ବିଚାରି ଆନନ୍ଦରେ ଦୁଆର ଫିଟାଇ ଦେଖେ ତ ଗାଈଫାଇ କିଛିନାହିଁ, ପଣ୍ଡେ କାନମୁଣ୍ଡା ଆଉଁସି ରଡ଼ି ଛାଡ଼ିଛନ୍ତି । ଯା ଦେଖି ସେ ପଚାରିଲା – କିଓ ଯେ କ'ଣ ହେଲା ?

ପଣ୍ଡା କଇଁକଇଁ ହୋଇ କହିଲା – ଆଲୋ ମୋ କର୍ଣ୍ଣ ଗଲା, କର୍ଣ୍ଣ ଗଲା ।

ପଣ୍ଡିଆଣୀ କହିଲା – ଆୟେ ମୋ କର୍ଣ୍ଣ ଗଲା କ'ଣ ? ମୁଁ ତ କିଛି ବୁଝିପାରୁ ନହିଁ ?

ପଣ୍ଡା କହିଲା – ଆଲୋ ବୁଝିବୁ କ'ଣ ? ମୋ କାନମୁଣ୍ଡା ଦେଖୁନାହୁଁ, କେଡ଼େ ଫୁଲିଛି । ସେ କହିଲା – କିଓ, ୟା କିଆଁ ହେଲା ? ପଣ୍ଡା କହିଲା – ଆଲୋ, ମୁଁ ଯେମିତି କହିଛି ମୁଁ ଗାଈ ନବାକୁ ଆସିଚି, ଏତିକିରେ ତ ଅଗା ଦାସ ରାଗିଯାଇ କଷିକରି ଗୋଟେ ଚାପୁଡ଼ା ଏଇ କାନମୁଣ୍ଡାକୁ ବଜେଇଲା । ଏଇତ ଦଶା, ଆଉ କହିବି କ'ଣ ? ପଣ୍ଡିଆଣୀ ବିକଳ ହୋଇ ପଣ୍ଡାଙ୍କ ହାତ ଧରି ଘରକୁ ନେଲା । ମୁନ୍ଦେ ରାଶିତେଲ ଆଣି ପହରେକାଳ କାନମୁଣ୍ଡାରେ ଘଷିବାରେ ପଣ୍ଡେ ଟିକିଏ ଥୟ ଧଇଲେ ।

ଗାଈ ତ ଯାହା' ମିଳିଲା, ଫଳରେ ହାତକଟା ସୂତାତକ ପଘାରେ ଗଲା । ପଣ୍ଡାଙ୍କ କାନମୁଣ୍ଡା ଚିତଉ ପିଠାପରି ଫୁଲିଗଲା ।



# ଯଖନ୍ ଯେମନ୍ ତଖନ୍ ତେମନ୍

ମହରମ୍ ପଠାଣମାନଙ୍କର ଗୋଟିଏ ବଡ଼ ପର୍ବ । ଏଥିରେ ରଙ୍ଗ କାଗଜ, ରଙ୍ଗତା, ଜରି ଜମ୍ଭୁରାରେ ଜଡ଼ୌତ କରି ନାନା ପ୍ରକାର ବିମାନ ତିଆରି କରନ୍ତି । ତାକୁ ତାଜିଆ କହନ୍ତି । ଗୋଟିଏ ଗୋଟିଏ ତାଜିଆରେ ବହୁତ ବହୁତ ଟଙ୍କା ଖର୍ଚ୍ଚ ହୁଏ । ପଠାଣମାନେ ସେ ତାଜିଆକୁ କାନ୍ଧରେ ଧରି ବହୁତ ପ୍ରକାର ବାଜା ବଜେଇ ଦାଣ୍ଡରେ ଶୋଭାଯାତ୍ରା କରିଯାଆନ୍ତି । ତାଜିଆ ଆଗରେ ଦଣ୍ଡ କସରତ, ଛୁରି ଖେଳ, ପଟା ଖେଳ, ବନାଟି ଖେଳ, ଖଣ୍ଡା ଖେଳ ଏହିପରି ନାନା ଖେଳ ଲାଗିଥାଏ । ହଜାର ହଜାର ଦେଖଣାହାରୀ ସାଙ୍ଗରେ ଚାଲିଥା'ନ୍ତି । ପଠାଣଯାକ ହାସେନ ହୋସେନ; ହାସେନ ହୋସେନ କହି ତାଳ ପକେଇଲା ପରି ଦି' ହାତ ଛାତିରେ ବାଡ଼େଇ ଚାଲିଥା'ନ୍ତି ।

ଥରେ କଲିକତାରେ ମହରମରେ ଏହିପରି ଗୋଟିଏ ତାଜିଆ ଚାଲିଥାଏ । ଭକ୍ତମାନେ ହାସେନ ହୋସେନ କହି କହି ଚାଲିଥା'ନ୍ତି । ସେତିକିବେଳକୁ ଆଗରୁ ଜଣେ ବୁଢ଼ା ନୈଷ୍ଠିକ ବ୍ରାହ୍ମଣ ଆସୁଥିଲେ । ସେ ଏ ଦଳବଳ ଦେଖି ହାସେନ ହୋସେନ ଶୁଣି ଭୟ କରିଗଲେ । ବିଚାରିଲେ ଏମାନେ ଯେପରି ଢଙ୍ଗରେ ଆସୁଛନ୍ତି, ମତେ ବ୍ରାହ୍ମଣ ଦେଖି ଯେବେ ଅତ୍ୟାଚାର କରନ୍ତି, ତେବେ ମୁଁ କରିବି କଅଣ ? ତେବେ ଏ ବିପଦରୁ ରକ୍ଷା ପାଇବି କିପରି ? ସେ ତ ବ୍ରାହ୍ମଣ ଲୋକ, ହାସେନ ହୋସେନ ତ କହିବେ ନାହିଁ; ଗୋଟିଏ ନୂଆ ଉପାୟ ପାଞ୍ଚିଲେ । ଦେଖିଲେ ଯେ ଯାଙ୍କରି ପରି ତ ଦୈବାତ୍ ମୋର ଦାଢ଼ି ଅଛି । ସମସ୍ତେ ତ ହାସେନ ହୋସେନ କହିବାରେ ଏକ ପ୍ରକାର ପାଗଳ ହୋଇଛନ୍ତି । ଏ ଗୋଳମାଳ ଭିତରେ କିଏ କ'ଣ କହୁଛି, କେହି କିଛି ଜାଣୁନାହିଁ । ସେହିପରି ଗୋଟିଏ କ'ଣ

କହି ତାଙ୍କରି ପରି ଛାତିରେ ହାତ ବାଡ଼େଇଲେ ତ ହୋଇଯିବ, ଆଉ ଚିନ୍ତା କ'ଣ ? ଏହା ବିଚାରି ସେ ବୁଢ଼ା ବ୍ରାହ୍ମଣ ଭୟ ଛାଡ଼ି ସେ ମେଳ ଭିତରେ ତାଙ୍କ ସ୍ୱରକୁ ସ୍ୱର ମିଳାଇ ଖାଲି କହୁଥାଏ – ଯଖନ୍ ଯେମନ୍, ତଖନ୍ ତେମନ୍ ଏହା କହି ତାଙ୍କରି ପରି ଛାତିରେ ହାତ ବାଡ଼େଇ ବାଡ଼େଇ ସେ ମେଳରେ ଚାଲିଥାଏ । ପଠାଣ ସବୁ ବୁଢ଼ାକୁ ବିଚାରିଲେ, ତାଙ୍କରି ଭିତରୁ ଜଣେ ପଠାଣ ବୋଲି । ବୁଢ଼ା ସେତକ କରି ସେ ମେଳରୁ ରକ୍ଷାପାଇ ଘରକୁ ଗଲା । ବୁଢ଼ା ସେତକ କଲା ବୋଲି ରକ୍ଷା ପାଇଗଲା । ନ ହେଲେ କ'ଣ ଗୋଟିଏ ହୋଇଯିବା ଅସମ୍ଭବ ନୁହେଁ ।

ପ୍ରକୃତରେ ଯଖନ୍, ଯେମନ୍, ତେଖନ୍ ତେମନ୍ ନ କଲେ ଅନେକ ସମୟରେ ବିପଦରେ ପଡ଼ିବାକୁ ହୁଏ ।



# ଆରେ ସତ ତ, ତତେ ଖାଇବାକୁ ମୋର ତ କାହିଁକି ମନ ହଉଚି

ଦିନେ ଗୋଟିଏ ଛେଳି ବଡ଼ ଚିନ୍ତାରେ ପଡ଼ିଲା । ସେ ଦେଖିଲା ଯେ ଛେଳି ଜନ୍ମ ପାଇ ବଞ୍ଚି ରହିବା କାଠିକର ପାଠ । ବ୍ରହ୍ମା ଯେ ଏତେ ଜୀବଜନ୍ତୁ ସୃଷ୍ଟି କଲେ, କେହି ତ ମୋ ପରି ନୁହନ୍ତି । ମୋର ବଞ୍ଚିବାରେ ଯେତେ ଆଶଙ୍କା, ଆଉ କାହାରି ତ ସେତେ ନୁହେଁ । ବାଘ ହେଲା ଯେ ତା'ର ମାରିବାକୁ ଦାନ୍ତ ରହିଲା, ପୁଣି ନଖ ରହିଲା । ତାକୁ ଯେବେ କିଏ ମାରିବାକୁ ଗଲା, ସେ ଦାନ୍ତରେ, ନଖରେ ତାକୁ ଜିଣିଲା । କୁମ୍ଭୀର ତ ଦାନ୍ତରେ, ଲାଞ୍ଜରେ ବିପଦରୁ ଉଦ୍ଧାର ପାଇଲା । ଗାଈ ପାଖକୁ ଗଲେ ତ ସେ ଶିଂଘରେ ଭୁଷିଲା । ସାପର ବିଷଦାନ୍ତ ଯୋଗୁଁ ତା' ପାଖ କେହି ମାଡ଼ିଲେ ନାହିଁ । ଏହିପରି ଗୋଟିଏ ଗୋଟିଏ ଜନ୍ତୁକୁ କାହାକୁ ଗୋଟିଏ କାହାକୁ ଯୋଡ଼ିଏ ହତିଆର ବ୍ରହ୍ମା ଦେଲେ । ମତେ କାହିଁକି କିଛି ଦେଲେନାହିଁ, ମୁଁ ବୁଝିପାରୁନାହିଁ । ଓଲଟି ବାଘ କହ, କୁମ୍ଭୀର କହ, ସାପ କହ, ମଣିଷ କହ ସମସ୍ତେ ମୋତେ ଖାଇବାକୁ ଆଗ । ବ୍ରହ୍ମାଙ୍କର ମୁଁ କି ଦୋଷ କଲି ଯେ ମତେ ଇମିତି ଜନ୍ମ ଦେଲେ । ଏଇଟା ନିଶ୍ଚୟ ବ୍ରହ୍ମାଙ୍କର ଅବିଚାର ।

ସେ ଏଇ କଥା ବୁଝି ଦିନେ ବ୍ରହ୍ମାଙ୍କ ପାଖକୁ ଗଲା । ବ୍ରହ୍ମା ଛେଳିକି ଦେଖି ପଚାରିଲେ –କିରେ ଛେଳି । ତୁ କୁଆଡ଼େ ଆସିଚୁ ? ଛେଳି କହିଲା – ମହାପ୍ରଭୁ । ତୁମେ ସଂସାରର ସବୁ ଜୀବଜନ୍ତୁ ସୃଷ୍ଟି କଲ; ଜୀବନ ରକ୍ଷା କରିବାକୁ କାହାକୁ ଦାନ୍ତଦେଲ, କାହାକୁ ଖଗ ଦେଲ, କାହାକୁ ନଖ ଦେଲ, କାହାକୁ ଶିଂଘ ଦେଲ । ଆଉ ମୁଁ ତୁମର କି ଦୋଷ କଲି ଯେ ଜୀବନରକ୍ଷା ପାଇଁ ମୋତେ କିଛି ଦେଲ ନାହିଁ । ଓଲଟି ମଣିଷ କହିଲା –

ମତେ ଖାଇବ, ବାଘ କହିଲା ଖାଇବ, ସାପ କହିଲା ଖାଇବ, କୁମ୍ଭୀର କହିଲା ଖାଇବ । ସମସ୍ତେ ତ କହିଲେ – ଖାଇବେ ବୋଲି । ଆଚ୍ଛା, ମୁଁ ବଞ୍ଚେ କିମିତି ? ଏଇଟା କ'ଣ ତୁମର ନ୍ୟାୟ ବିଚାର ?

ବ୍ରହ୍ମା କହିଲେ – ସମସ୍ତେ କହିଲେ ତତେ ଖାଇବେ ବୋଲି ? ହଁ କହୁଥିବେ ତ । ଆରେ ମୋର ତ କାହିଁକି ତତେ ଖାଇବାକୁ ମନ ହଉଚି ।

ଛେଳି କହିଲା – ବାଃ, ମୁଁ ଖାସା ଗୁହାରି କରିବାକୁ ଆସିଲି । ଧନ୍ୟ ତୁମର ନ୍ୟାୟ । ଧନ୍ୟ ତୁମର ବିଚାର ।।



# ସନା ବୋପା ଦନା ସିଇଁ, ଠୋଲା ଠୋଲା କରି ପିଠା ପିଇ

ଗୋଟିଏ ଗାଁ'ରେ ଜଣେ ତନ୍ତୀ ଥିଲା । ତା'ର ଭାର୍ଯ୍ୟା ମଧ ଥିଲା । ତନ୍ତିଆଣୀଟି ଅଲିବଲୀ, ଅସନମୁଳି, କଳିକତୁରୀ । ସେ ରାନ୍ଧିବାଢ଼ି ଜାଣେ ନାହିଁ, କି ଜିନିଷପତ୍ର ସଜାଡ଼ି ରଖି ଜାଣେନାହିଁ । ସେ ପୁଣି ଇମିତି କଳିକତୁରୀ ଯେ ସମସ୍ତଙ୍କ ସାଙ୍ଗରେ କଳି । ଦି'ପାଖ ପଡ଼ିଶାଘର ସଙ୍ଗେ ଆଠାକାଳି ବାରମାସି ଅପଡ଼ ।

ଦିନେ କାହିଁକି ତନ୍ତୀର ପିଠା ଖାଇବାକୁ ମନ ହେଲା । ସେ ଭାର୍ଯ୍ୟାକୁ କହିଲା – ଆଲୋ । ମୁଁ ନଡ଼ିଆ ଆଣି ଦଉଛି, ଗୁଡ଼ ଆଣି ଦଉଛି; ତୁ ଆଜି ପିଠା କର, ଦିହେଁ ଖାଇବା । ସେ କହିଲା – ହଉ ଆଣ । ତନ୍ତୀ ପିଠା ଜିନିଷ ଆଣିବାକୁ ବଜାରକୁ ଗଲା ।

ତନ୍ତୀଆଣୀ ସବୁ ଆଣିବାକୁ କହିଦେଲା ସିନା, କେଉଁ ପିଠାଟି ଆସେ ଯେ ପିଠା କରିବ ? ଯାହା ହାତରେ ଖଡ଼ା ସିଝିବ ନାହିଁ, ସେ ପିଠା କ'ଣ କରିବ ? ସେ ବଡ଼ ଭାଳେଣିରେ ପଡ଼ିଲା । ପଡ଼ିଶାଘରକୁ ପଚାରନ୍ତା ଅବା, ତାଙ୍କ ସାଙ୍ଗରେ ତ କଳି, ମୁହଁ ଚୁହାଚୁହିଁ ନାହିଁ । କେଉଁ ମୁହଁରେ ପଚାରିବ ? କ'ଣ କରିବ ବୋଲି ଭାବି ହେଉଥାଏ । କିଛି ଉପାୟ ନ ପାଇ କାନ୍ଥକୁ ବାଡ଼କୁ ଦେଖାଇ ପଡ଼ିଶା ଘରକୁ ଶୁଣାଇ କହିଲା – ଘରେ ପିଠା ହେବ ଯେ, କ'ଣ କରିବି ? ମୁଁ ତ ପିଠା କରି ଜାଣେନାହିଁ । କିଏ କହିଲେ ସିନା ହୁଅନ୍ତା । କେହି ତ କଥା କହିବେ ନାହିଁ । ଆଉ କ'ଣ କାନ୍ଥବାଡ଼କୁ ପଚାରିବି ?

ତନ୍ତିଆଣୀ ଅଗଣାରେ ଏହିପରି ଦେଖେଇ ଶିଖେଇ କହିବାରେ ପଡ଼ିଶାଘର ଶୁଣିଲା । ପଡ଼ିଶାଘର ଜାଣିଛି – ଏଇଟା ଅସନମୂଳି, କିଛି

ଜାଣେ ନାହିଁ । ତା' ସାଙ୍ଗରେ ତ ତା'ର ପଡୁ ନଥିଲା, ସୁକଟ ଦେଖିବାକୁ ସେହିପରି କାନ୍ଥବାଡ଼କୁ ଦେଖେଇ କହିଲା –

କାନ୍ଥ ଶୁଣ୍, ବାଡ଼ ଶୁଣ୍,
ଯେତେ ଚୂନାକୁ ତେତେ ଲୁଣ୍ ।
ପାଣି ଦେଇଥିବ ଅଢ଼େଇ ଗୁଣ୍,
ତେବେ ସେ ଜାଣିବ ପିଠାର ଗୁଣ୍ ।

ତନ୍ତିଆଣୀ ଏତକ ଯହୁଁ ଶୁଣିଲା, ଭାବିଲା – ଏଇ ତ ପିଠାଭାଗ, ଏଥର ମୁଁ କରିଦେବି ନାହିଁ କି ?

ତନ୍ତୀ ସବୁ ଜିନିଷ ଆଣି ଦେଲା । ତନ୍ତିଆଣୀ ରାନ୍ଧୁଣୀପଣିଆ ଦେଖାଇବାକୁ ଧଡ଼ପଡ଼ ହୋଇ ଉଠି ପଡ଼ିଶାଘରୁ ଯେଉଁ ଭାଗ ଶିଖିଥିଲା; ସେହିପରି ଲୁଣ, ପାଣି ଦେଇ ପିଠଉ କରି ପିଠା କରିବସିଲା । ତନ୍ତୀ ପିଠା ଖାଇବ ବୋଲି ଆଉ କୁଆଡ଼େ ନ ଯାଇ ହାଣ୍ଡିଶାଳେ ବସିଥାଏ । ତନ୍ତିଆଣୀ ପିଠୋଉତକ ହାଣ୍ଡିରେ ପୂରେଇ ଚୁଲିରେ ବସାଇ ନିଆଁଜାଳି ଖାଲି ଘାଣ୍ଟିଲା । ଘାଣ୍ଟି ଘାଣ୍ଟି କେତେବେଳେ ଉତ୍ତାରୁ ଚୁଲିରୁ କାଢ଼ି ଥୋଇଦେଇ ତନ୍ତୀକୁ କହିଲା – ପିଠା ତ ହୋଇଗଲା, ଆସ ଖାଇବ । ତନ୍ତୀ ପିଠା ଖାଇବ ବୋଲି ଆନନ୍ଦରେ ଦଉଡ଼ି ଆସିଲା । ଆସି ଦେଖେ ତ କଳା କଟକଟ ଅଟକାଳି ପାଣିଆଟିକେ । ଯା ଦେଖି କହିଲା – ପିଠା କ'ଣ ଇମିତି ? ଯାକୁ ମଣିଷ ଖାଇବ କିମିତି ?

ରାନ୍ଧୁଣୀ କହିଲା –

ସନା ବୋପା ଦନା ସିଇଁ,
ଠୋଲା ଠୋଲା କରି ପିଠା ପିଇ ।

ଆଉ ଚାରା କ'ଣ ଅଛି ? ତନ୍ତୀ ବିଚରା ସିଇଁଲା ଦନା ପିଇଲା ପିଠା । ଯା ନାଁ ଯେ ରାନ୍ଧୁଣୀ ।



# ଚୋରକୁ ହାତକାମୁଡ଼ା ଶିଖେଇବା

ଜଣକ ଘରେ ରାତି ଅଧରେ ଗୋଟିଏ ଚୋର ପଶିଲା । ଚୋର ଖଡ଼ ଖଡ଼ କରିବାରେ ସେ ଘରର ପୁଅ ଜାଣିପାରି ଛପି ଛପି ଯାଇ ଚୋରକୁ ପଛଆଡୁ ଜକଟମକଟ କରି କୁଣ୍ଢେଇ ଧଇଲା । ସେଥିରେ ଚୋରର ଦୁଇହାତ ବନ୍ଦ ହୋଇଗଲା । ଚୋରର ମନ, ଯାକୁ କିମିତି ଟାଙ୍କେ ଛେଚି ଖସି ପଳାନ୍ତି । ଦି' ହାତ ତ ବନ୍ଦ, ଖସିବ କେତେବେଳେ ? ଧରିବା ଲୋକ ମଧ୍ୟ ଆଉ କିଛି କରିପାରୁ ନ ଥାଏ । କାହିଁକି ନା, ତା' ଦି' ହାତ ମଧ୍ୟ ବନ୍ଦ । ସେ କିଛି ଉପାୟ ନ ପାଇ ବାପକୁ ଡାକ ପକାଇଲା – ବାପା ହେ, ଚୋର ଧରାପଡ଼ିଚି, ଦଉଡ଼ିଆସ । ମୁଁ ତାକୁ ପଛଆଡୁ କଠା ପକାଇ ଧରିଚି ।

ବାପା ଅତି ବୁଢ଼ା । ସେ ଚୋର ପାଖକୁ ଯିବାକୁ ଆହବି ପାରିଲା ନାହିଁ । ସେ ଦେଖିଲା ଯେ ଚୋର ହାତ ସିନା ବନ୍ଦ ଅଛି, ମୁହଁ ତ ବନ୍ଦ ନାହିଁ । କାଳେ ମୁହଁ ବୁଲାଇ ମୋ ପୁଅକୁ ପୁଳେ କାମୁଡ଼ିଦେବ । ଏହି ଆଶଙ୍କାରେ ବୁଢ଼ା ଅତର୍କ୍କରେ ପାଟିକରି କହିଲା – ଆରେ, ଉଲାଟା, ଚୋର ହାତ ସିନା ବନ୍ଦ ଅଛି, ମୁହଁରେ କ'ଣ କାମୁଡ଼ି ଦେଇପାରିବ ନାହିଁ ? ଯେବେ ମୁହଁ ବୁଲାଇ କାମୁଡ଼ିଦିଏ, ତେବେ କ'ଣ କରିବି ? ଯାହା ହେଲା ହେଲା । ସାବଧାନ ହୋଇ ଏବେ ଖସିଆ । ଚୋରକୁ ଉପାୟ ଦିଶୁ ନ ଥିଲା । ବୁଢ଼ାଠଉଁ ଯହୁଁ ଏତକ ଅକଲ ପାଇଲା, ତହୁଁ କାମୁଡ଼ିବାକୁ ମୁହଁ ବୁଲାଇଲା । ପୁଅ ଏତିକିରେ ଅତର୍କ୍କରେ ମୋ ବୋପା ଲୋ ବୋଲି ପାଟିକରି ଚୋରକୁ ଛାଡ଼ିଦେଇ ଭାଗ୍ । ଚୋର ମଧ୍ୟ ସାଙ୍ଗେ ସାଙ୍ଗେ ଚମ୍ପଟ ।

ଯାକୁ କହନ୍ତି – ଚୋରକୁ ହାତକାମୁଡ଼ା ଶିଖାଇବା ।



# ଭଗବାନ ଭୂତତାଂ ଗତଃ

ତିଣେ ଜଣେ ରାଜା ଖୋସାମତିଆଙ୍କୁ ଭାରି ଭଲ ପାଆନ୍ତି । ତାଙ୍କୁ ଯେ, ଟେକାଟେକି କରି କହିପାରିଲା, ସେ ହେଲା ରଜାଙ୍କର ପ୍ରିୟ । ସବୁ ରାଜୁଡ଼ାରେ ପଂଝେ ପଂଝେ ଇମିତି ଖୋସାମତିଆ ଥାଆନ୍ତି । ପର ନାଁରେ ଚୁଗୁଲି କରିବା ହେଲା ତାଙ୍କର ପ୍ରଧାନ କାମ । ସେଇଥିରେ ସେମାନେ ରଜାଙ୍କ ପାଖରେ ବଢ଼ିଆ ହୁଅନ୍ତି । ସେମାନଙ୍କୁ ଲୋକେ ରାଜଅନୁଗୃହୀଆ ବୋଲି କହନ୍ତି । ରାଜ୍ୟ ମଧ୍ୟରେ ସେହିମାନଙ୍କର କରଣି ବଡ଼ କାଟୁକରେ । ସେହିମାନଙ୍କ ଦାଉରୁ ଭଦ୍ରଲୋକେ ଆଉ ରଜା ପାଖ ମାଡ଼ନ୍ତି ନାହିଁ ।

ଗୋଟିଏ ଦେଶରେ ଜଣେ ରଜା ଥିଲେ । ତାଙ୍କର କିଛି ପଢ଼ାଶୁଣା ନ ଥିଲା । ତାଙ୍କର ପଂଝେ ଖୋସାମତିଆ ଥାଆନ୍ତି । ସେ ଖୋସାମତିଆଙ୍କ ଭିତରେ ଭଗବାନ ବୋଲି ଜଣେ ଲୋକ ଥିଲା । ସମସ୍ତଙ୍କ ଅପେକ୍ଷା ତା'ର ରାଜଅନୁସରଣ ଟାଣ । ଭଗବାନ ପାଠଶାସ୍ତ୍ର କିଛି ଜାଣେ ନାହିଁ । ଖାଲି ୟା ନାଁରେ ତା' ନାଁରେ ରାତିଦିନ ଗୁଡ଼େ ଚୁଗୁଲି କରେ । ରଜା ତ ଗଣ୍ଡମୂର୍ଖ, ସେ ଭଗବାନ କଥାରେ ଭୁଲିଯାଇ କାହାକୁ ଚାକିରିରୁ ବରଖାସ୍ତ କରନ୍ତି, କାହାର ଜାଗିରି କାଟନ୍ତି, କିଏ ରାଜ୍ୟରୁ ତଡ଼ାହୁଏ, କାହାକୁ ରାଜଦ୍ୱାର ବାସନ୍ଦ; ଏହିପରି କିଏ କେତେ ଦଣ୍ଡ ପାଇଲେ । ରଜା ଭଗବାନ କଥାରେ ଚଳିବାରେ ତା'ର ଗର୍ବ ବଢ଼ିଗଲା । ଆଉ କାହାକୁ ମଣିଷ କରି ଖାତିରି କଲା ନାହିଁ ।

ସମସ୍ତେ ଜାଣିଲେ – ଏ ସମସ୍ତର ମୂଳ କାରଣ ଭଗବାନ । ତା'ରି ଉପରେ ସମସ୍ତଙ୍କର ରାଗ ବଢ଼ିଲା । ତାକୁ କିମିତି ଠିକଣା ପାନେ ଦେବେ, ସମସ୍ତେ ସେଇ ଖଞ୍ଜାଖାଞ୍ଜିରେ ରହିଲେ । ଏଥିକି ରଜାଘର ଦୁଆରୀଠାରୁ ଆରମ୍ଭ କରି ବଡ଼ବଢ଼ିଆ ପର୍ଯ୍ୟନ୍ତ କେହି ଭଗବାନର ନୁହଁନ୍ତି । ସମସ୍ତେ

ଏକ ମେଣ୍ଟ ହେବାରେ ଦୁଆରୀ ଭଗବାନଙ୍କୁ ଦୁଆର ରୋକିଲା । ରଜା ପାଖକୁ ଛାଡ଼ିଲା ନାହିଁ । ସେ ଆଉ ରଜା ଘରକୁ ଯାଇପାରିଲା ନାହିଁ ।

ଭଗବାନ ଆଉ କିଛି ଉପାୟ ନ ପାଇ ଖଣ୍ଡିଏ କାଗଜରେ ସବୁ ବିଷୟ ଟିକିନିଖି କରି ଲେଖି ରଜାଙ୍କର ଗଉଡୁଣୀ ହାତରେ ରଜାଙ୍କ ପାଖକୁ ପଠାଇଲା । ଗଉଡୁଣୀ ଉଆସକୁ ଦୁଧ ଦହି ନେଇ ଗଲାବେଳେ ଚିଠିଖଣ୍ଡି ଉଆସ ବେଭାରୀ କି ଦେଇଆସିଲା । ଭଗବାନ ବେଭାରୀକୁ ମଧ୍ୟ ଛାଡ଼ି ନାହିଁ । ଥରେ ତାକୁ ଦଶ ଟଙ୍କା ଜୋରିମାନା କରାଇଥିଲା । ସେ ଯେମିତି ପାଇଲା ଭଗବାନ ଚିଠିକି, ତାକୁ ସାଙ୍ଗେ ସାଙ୍ଗେ ଚିରିଦେଲା । ଭଗବାନ ଏହିପରି କେତେ ଚିଠି ଲେଖିଲା; କିନ୍ତୁ ସମସ୍ତେ ତ ଶତ୍ରୁ, ଚିଠି ଦେବ କିଏ ? ସବୁ ଚିଠିତକ ଚିରାହେଲା । ଭଗବାନର ଖବର ରଜା କିଛି ଜାଣିଲେ ନାହିଁ ।

ଭଗବାନ ବହୁକାଳ ରଜାଙ୍କ ଛାମୁକୁ ନ ଆସିବାରୁ ରଜା ଦିନେ ପାଖଲୋକଙ୍କୁ ପଚାରିଲେ – ଭଗବାନ କାହିଁକି ଆସୁନାହିଁ ? ପାଖଲୋକ କହିଲେ – ଆଜ୍ଞା ଭଗବାନ ଅଛି କି ? ସେ କେତେକାଳୁ ମଲାଣି । ଏତେଲୋକ କହିବାରୁ ରଜା ସେଥିରେ ବିଶ୍ୱାସ କଲେ ।

ସେ ରାଜ୍ୟର ପ୍ରଧାନ ଠାକୁରଙ୍କର ପ୍ରତିବର୍ଷ ଗୋଟିଏ ବଡ଼ ଯାତ୍ରା ହୁଏ । ବହୁତ ଲୋକ ଜମା ହୁଅନ୍ତି । ଦୋକାନ ବଜାର ଗୁଡ଼ିଏ ବସେ, ରଜା ମଧ୍ୟ ବିଜେ କରନ୍ତି । ସେ ବର୍ଷ ମଧ୍ୟ ଯାତ୍ରାରେ ବହୁତ ଲୋକ ରୁଣ୍ଡ ହେଲେ । ରଜା ମଧ୍ୟ ବିଜେ କଲେ । ଭଗବାନ ଦେଖିଲା ଯେ ରଜାଙ୍କୁ ଦେଖାକରିବାର ଏ ଉପଯୁକ୍ତ ସମୟ । ରଜାଘରକୁ ସିନା ଯାଇ ହେଲାନାହିଁ, ରଜା ତ ଆସିଲେଣି, ଆଉ ଦେଖା ହେବାର ଅସୁବିଧା ନାହିଁ । ଯାତ୍ରାରେ ବହୁତ ଲୋକ ବେଢ଼ିଥିବେ, କେହି ପାଖକୁ ଛାଡ଼ି ଦେବେ ନାହିଁ । ଏଣୁ ଆଗରୁ ଯାଇ ଗୋଟିଏ ଗଛରେ ଲୁଚି କରି ରହିଲା ।

ରଜା ବିଜେ କରିବାରେ ଭଗବାନ ଗଛ ଉପରୁ କହିଲା – ଆଜ୍ଞା ମୁଁ ଭଗବାନ, ଲୋକେ ମତେ ଛାଡ଼ି ନ ଦେବାରୁ ମୁଁ ଛାମୁକୁ ଯାଇପାରୁ ନାହିଁ । ଛାମୁକୁ ଯାଇ ନ ପାରି ବହୁତ କଷ୍ଟ ଭୋଗିଲିଣି । ଏହିପରି କେତେ

କ'ଣ ଦୁଃଖ କହିଲା । ଦିନବେଳା ହୋଇଥିଲେ ସିନା ରଜା ଭଗବାନକୁ ଦେଖି ପାରିଥା'ନ୍ତେ, ରାତି ଅନ୍ଧାରରେ ଦେଖିପାରିଲେ ନାହିଁ । ରଜା ଭଗବାନର କଥା ଶୁଣି ଲୋକଙ୍କୁ ପଚାରିଲେ – କିଓ, ଭଗବାନ ତ ବଞ୍ଚିଛି, ମରିଛି ବୋଲି କିଏ କହିଲା ?

ଲୋକେ କହିଲେ – ନାହିଁ ଆଜ୍ଞା, ଭଗବାନ ଆଉ କାହୁଁ ଆସିବେ ? ଭଗବାନ ମରିବାର ପରା ଚାରିମାସ ହେଲାଣି ।

ରାଜା କହିଲେ ତେବେ ଏ ଗଛରେ କିଏ କଥା କହୁଚି ?

ପାଖ ଲୋକେ କହିଲେ, ଛାମୁ ସିନା ଆଜି ଶୁଣିଲେ, କେତେକାଳ ହେଲା ଗଛରୁ, ବୁଦାରୁ, ଲଟିରୁ କେତେ ଲୋକ ଏଭଳି ଶୁଣିଲେଣି । ତା' ପୁଅ ପରା ଶୁଦ୍ଧିକ୍ରିୟାଟିଏ କଲାନାହିଁ । କିପରି ଆଉ ସେ ମୁକ୍ତ ହେଲା ? ଭୂତ ପ୍ରେତ କେତେ କେଉଁଠି ବାହାରୁଚି । ଭଗବାନ ଭୂତ ଯୋଗୁଁ ଲୋକେ ଆଉ ଏବାଟେ ଯାଉନାହାନ୍ତି ।

ରଜା କହିଲେ – ତେବେ ଇମିତି କଥା । ଭଗବାନ ଗଛ ଉପରୁ ଯାହା ଯେତେ କହିଲା ରଜା ସେସବୁ କିଛି ଶୁଣିଲେ ନାହିଁ । ଭଗବାନ ନିରାଶରେ ଘରକୁ ଫେରିଲା । ଜୀବନଟା ସାରା ସେ ଆଉ ରଜାଙ୍କୁ ଦେଖି ନାହିଁ, ଲୋକଙ୍କ ତୁଣ୍ଡରେ ସେ ଭୂତ ପାଲଟିଗଲା ।

ଏଥିପାଇଁ ବଡ଼ ବଡ଼ ଲୋକେ କହିଛନ୍ତି –

ଚକ୍ରଂ ସେବ୍ୟଂ ନୃପଃ ସେବ୍ୟୋ ନ ସେବ୍ୟଃ କେବଳଂ ନୃପ ।
ଆହୋ ଚକ୍ରସ୍ୟ ମାହାତ୍ମ୍ୟଂ ଭଗବାନ ଭୂତତାଂ ଗତଃ ।।



# ସାହେବଙ୍କ ଓଡ଼ିଆ ବକ୍ତୃତା

ଗୋଟିଏ ଚା ବଗିଚାରେ ଜଣେ ସାହେବ ମେନେଜର ଥିଲେ । ସେ ବଗିଚାର ଅଧିକାଂଶ କୁଲି ଓଡ଼ିଆ । ମେନେଜର ସାହେବ ସେମାନଙ୍କ ସାଙ୍ଗେ ବହୁ ଦିନ ଚଳାଚଳ ହବାରେ ଟିକିଏ ଓଡ଼ିଆ ଶିଖିଗଲେ । କୁଲିଗୁଡ଼ାକ ଅନେକ ସମୟରେ ସାମାନ୍ୟ କଥାରେ ଯେ ତାକୁ, ସେ ୟାକୁ ଶଳା ବୋଲି କହନ୍ତି । ସାହେବ ବହୁତ ବାର ଏ ଶଳା ଶବ୍ଦ ଶୁଣି ଜଣେ କୁଲିକି ପଚାରିଲେ – ଆଛା' ତୁ ତାକୁ କହୁଚୁ ଶଳା, ସେ ତତେ କହୁଚି ଶଳା, ଯେ ଯାହାକୁ ପାଉଚି, ସେ ତାକୁ କହୁଚି ଶଳା । ଆଛା ଏ ଶଳା ଶବ୍ଦର ଅର୍ଥ କ'ଣ ?

ଜଣେ କୁଲି କହିଲା – ସାହେବ ! ଶଳା ହେଉଛି ପ୍ରିୟ ବନ୍ଧୁ । ସାହେବ ସେହି ଦିନୁ ବୁଝିଲେ ଯେ ଶଳା ଅର୍ଥ ପ୍ରିୟବନ୍ଧୁ । ସାହେବ ସେଇଥିରୁ ବୁଝିଲେ ଓଡ଼ିଆରେ କାହାକୁ ପ୍ରିୟବନ୍ଧୁ କହିବା ଯାହା, ଶଳା କହିବା ତାହା ।

ଦିନେ କୌଣସି ସ୍ଥାନରେ ଗୋଟିଏ ବଡ଼ ସଭା ହେଲା । ସେଥିରେ ସଭାପତି ହେଲେ ସାହେବ । ଓଡ଼ିଆମାନେ ସେ ସଭା କରାଇଥିଲେ । ତେଣୁ ସାହେବ ଅନ୍ୟ ଭାଷାରେ ବକ୍ତୃତା ନ ଦେଇ ଓଡ଼ିଆରେ ବକ୍ତୃତା ଦେଲେ । ସେ ଠିଆହୋଇ ଆଗ ସମ୍ବୋଧନ କରି କହିଲେ – ଆହେ ଶଳାମାନେ । ଏତିକି ତ କହିଛନ୍ତି, ଏତିକିରେ ସଭାଗୋଟାକ ଲୋକ ନିଆଁ ବାଣ ହୋଇଉଠିଲେ । ସାହେବ ଏହା ଦେଖି କାବା ହୋଇ ପଚାରିଲେ – ୟେ କ'ଣ ? ତୁମେସବୁ କାହିଁକି ଏପରି ଅଭଦ୍ର ବ୍ୟବହାର କରୁଚ ? ଲୋକେ କହିଲେ – କରିବୁ ନାହିଁ ? ତୁମେ ବାକି ରଖିଛ ? ସଭା ମଧ୍ୟରେ କହୁଚ କ'ଣ ନା, ଆହେ ଶଳାମାନେ । ଆମେ କ'ଣ ସବୁ ତମର ଶଳା ।

ସାହେବ କହିଲେ – କ୍ଷତି କ'ଣ ? ନିଆଁରେ ଘିଅ ଢାଳିଲା ପରି ସାହେବଙ୍କ ଏ ଉତ୍ତରରେ ଲୋକେ ଆହୁରି ତେଜି ଉଠିଲେ । ସାହେବ କିଛି ବୁଝିପାରିଲେ ନାହିଁ । ଜଣେ ଭଦ୍ରଲୋକ ସାହେବଙ୍କୁ ବୁଝାଇ କହିଲା – ଶଳା ହଉଚି ଭାର୍ଯ୍ୟାର ଭାଇ । ଏହା ଗୋଟିଏ କୁତ୍ସିତ ଗାଳି । ଆପଣ ଏପରି ଗାଳି ଦେବାରୁ ଲୋକେ ତେଜି ଉଠିଲେ । ନହେଲେ ଏପରି ଅବସ୍ଥା କାହିଁକି ହୋଇଥା'ନ୍ତା ?

ସାହେବ କହିଲେ – ତୁମରି ଲୋକେ ତ କହିଥିଲେ ଶଳା ଅର୍ଥ ପ୍ରିୟବନ୍ଧୁ । ମୁଁ କ'ଣ ମନରୁ କହିଥିଲି ? ଏହା ବୁଝିଥିଲି ବୋଲି ସିନା ସମ୍ବୋଧନ କଲି । ନ'ହେଲେ କିଆଁ କହିଥା'ନ୍ତି ? ଭଦ୍ରଲୋକ କହିଲେ – ଶଳା ପ୍ରକୃତରେ ପ୍ରିୟବନ୍ଧୁ । ଏହାବୋଲି ସମସ୍ତେ ଶଳା ? ଏଣିକି ଆପଣ କାହାକୁ ଶଳା ବୋଲି କହିବେ ନାହିଁ ।

ସାହେବ କହିଲେ – ଆଉ ଏଥିରେ କଥା ଅଛି ?

ସାହେବଙ୍କ ଓଡ଼ିଆ ଜ୍ଞାନ ଦେଖିଲ ତ ?



# ବେହେରାଙ୍କ ଅକଲ

ଜଣେ ସାହେବ ଏ ଦେଶକୁ ଗୋଟିଏ ବଡ଼ ହାକିମ ହୋଇ ଆସିଲେ । ବେଳେ ବେଳେ ତାଙ୍କୁ ଗସ୍ତ କରିବାକୁ ପଡୁଥିଲା । ସେ କାଳରେ ଏକାଳ ପରି ରେଳ, ମଟର ନ ଥିଲା । ହାକିମ ହୁକୁମାମାନେ ସବାରିରେ ବା ତାମଯାନରେ ଯିବା ଆସିବା କରୁଥିଲେ । ଥରେ ଗୋଟିଏ ବଡ଼ ଜରୁରୀ କାମରେ ସାହେବଙ୍କୁ ମଫସଲ ଯିବାକୁ ପଡ଼ିଲା । ତାଙ୍କ ଯିବା ପାଇଁ ସବାରି ସଜ ହେଲା । ସାହେବ ସବାରିରେ ବସିଲେ । ବେହେରାମାନେ ହୁଁ ହାଁ ଡାକ ପକାଇ ସବାରି ବୋହିଲେ । ସାହେବ କହିଥା'ନ୍ତି – ଦେଖ ଜରୁରୀ କାମ ଅଛି କେଉଁଠାରେ ସବାରି ନ ରଖି ଏକଦମ୍ ଠିକଣା ଜାଗାରେ ପହଞ୍ଚାଇବ ।

ସାହେବ ବଡ଼ ମୋଟା ଲୋକ । ଦମ୍ ନ ନେଇ ତାଙ୍କୁ ବହୁତ ବାଟ ନବା ଅସମ୍ଭବ । ବେହେରାମାନେ ଦୁଇ ତିନିକୋଶ ଯିବା ପରେ କାନ୍ଧକୁ କାଟିଲା । ରଖିଲେ ତ ସାହେବ ବାଡ଼େଇବ, କରିବେ କ'ଣ ? ଗୋଟାଏ ଉପାୟ ପାଞ୍ଚିଲେ । ସାହେବ ତ ଓଡ଼ିଆ ଜାଣେ ନାହିଁ, ଖଣ୍ଡିଆ ଖଣ୍ଡିଆ ହିନ୍ଦୀ ଟିକିଏ ଜାଣେ । ବେହେରା ତ ହମ୍ବର ଭାଇ ଖବର ଖାଇ ଡାକମାରି ଚାଲିଥା'ନ୍ତି । ଯାଉ ଯାଉ ବାଟରେ ଗୋଟେ ତୁଳସୀ ବଗିଚା ଦେଖିଲେ । ସେହିଠାରେ ସବାରି ରଖିବାକୁ ଡକାହକା ପକାଇଲେ । ସମସ୍ତେ ସବାରି ଥୋଇଦେଇ ତୁଳସୀ ଗଛମୂଳେ ଲମ୍ବ ଲମ୍ବ ଦଣ୍ଡବତ କଲେ ।

ସବାରି ରଖିବାରୁ ସାହେବ ରାଗିଯାଇ ହିନ୍ଦୀରେ କହିଲା – କିବେ, ୟେ କ'ଣ ? ସବାରି କାହିଁକି ବନ୍ଦ କଲ ?

ବେହେରାମାନେ କହିଲେ – ଆମ ଦେବତା ଦେଖିଲୁ, ତାଙ୍କୁ ଦଣ୍ଡବତ ନ କରି କିମିତି ଯାଆନ୍ତୁ ?

ସାହେବ କହିଲେ – ତୁମ ଦେବତା କାହିଁ ?

ବେହେରାମାନେ ତୁଳସୀଗଛକୁ ଦେଖାଇ କହିଲେ – ହଜୁର ! ଏଇ ଆମ ଦେବତା । ବେହେରା ଗଛକୁ ଦେବତା କହିବାରେ ସାହେବ ରାଗିମାଗି ତୁଳସୀଗଛ ଓପାଡ଼ି ଗୋଡ଼ରେ ହାତରେ ଦଳାଦଳି କରି ଫିଙ୍ଗିଦେଇ କହିଲେ – ଲେଓ ତୋମାରା ଦେବତା।

ବେହେରାମାନେ କିଛି ନ କହି ସବାରି କାନ୍ଧେଇ ବାହାରିଲେ; କିନ୍ତୁ ତୁଳସୀଗଛ ଓପାଡ଼ିବାରୁ ସମସ୍ତଙ୍କର ରାଗ ହେଲା । ସାହେବକୁ ପାନେ ଦବାକୁ ସମସ୍ତେ ମନେ ମନେ ପାଞ୍ଚିଲେ । ପୁଣି ଦୁଇ ତିନିକୋଶ ଯିବାପରେ ଗୋଟେ ବିଛୁଆତି ବଣ ପଡ଼ିଲା ।

ବିଛୁଆତି ବଣଦେଖି ବେହେରାମାନେ କଲେ କଣନା, ସବାରିକୁ ଥୋଇଦେଇ ସମସ୍ତେ ଦଉଡ଼ି ଯାଇ ବିଛୁଆତି ମୂଳରେ ଲମ୍ବ ଲମ୍ବ ହୋଇ ଦଣ୍ଡବତ କଲେ । ସାହେବ ପୁଣି ସେହିପରି ଦେଖି ଅଧିକ ରାଗିଯାଇ କହିଲେ – କେଉଁ ବା ଶାଲା । ଫେର୍ ଏ କ୍ୟା ।

ବେହେରାମାନେ କହିଲେ – ହଜୁର ! ପୁଣି ଦେବତା ଦେଖିଲୁ, ମୁଣ୍ଡିଆ ନ ମାରିଗଲେ ଆମର ଅଧର୍ମ ହୁଅନ୍ତା।

ସାହେବ ଅଧିକ ରାଗିଯାଇ କହିଲେ – ଫେର୍ ତୁମ୍ ଲୋକ୍କା ଦୁସରା ଦେବତା କୋନ ହେ ? ବେହେରାମାନେ ବିଛୁଆତି ଗଛକୁ ଦେବତା ବୋଲି ଦେଖାଇ ଦେବାରେ ସାହେବ ପୂର୍ବପରି ରାଗି ବିଛୁଆତି ଓପାଡ଼ି ଦଳାଦଳି କରି ଦିହରେ ମୁଣ୍ଡରେ ବୋଳିହୋଇ ଫିଙ୍ଗିଦେଇ କହିଲେ – ଲେଓ ତୋମାରା ଦେବତା । ଶାଲା, ଫେର୍ ଦେବତା ଦେଖାତା ।

ସାହେବ କଥା ସରିଛି କି ନାହିଁ, ହେଲା ଦେହମୁଣ୍ଡ କୁଣ୍ଢେଇ ଯେ ସାହେବ ଯାଏ କୁଆଡ଼େ ? ଦିହ ଗୋଟାଯାକ ରାମ୍ପୁଡ଼ିବିଦାରି କଣ୍ଟୁ ଦାଉରେ କଲବଲ ହୋଇ ନାଚିଲା । ବେହେରାମାନେ ଏଇଥିପାଇଁ ତ ବିଛୁଆତିକି ଦେବତା କରିଥିଲେ । ସାହେବର ଅବସ୍ଥା ଦେଖି ମନେ ମନେ ଭାରି ଖୁସି ହେଲେ ।

ସାହେବ ବିଛୁଆତି ଦେଖି ନ ଥିଲେ, କି ତା' ଗୁଣ ଜାଣି ନ ଥିଲେ । ଏପରି ହେବାରୁ ପଚାରିଲେ – କେଉଁବେ, ଏଷା କେଉଁ ହୋତା ?

ବେହେରାମାନେ କହିଲେ – ହଜୁର ! ସେ ଥର ସାନ ଦେବତା ବୋଲି ସିନା କିଛି ହେଲାନାହିଁ । ୟେ ପରା ବଡ଼ ଦେବତା । ତାଙ୍କୁ ନ ମାନିଲେ ସେ ଛାଡ଼ନ୍ତେ ? ସେଇଥିପାଇଁ ଏୟା ହେଲା । ଏବେ ଆମ ଦେବତା ମହିମା ବୁଝିଲ ?

ସାହେବ କହିଲେ – ସବ୍ ସମ୍‌ଝା ଲିୟା । ତୁମ୍ ଲୋକ୍ କୁଛ୍ ବି କରୋ, ଆର୍ କୁଛ୍ ନେହିଁ ବୋଲେଙ୍ଗେ ।

ଏଥର ବେହେରାମାନେ ଅକଲ ଯୋଗୁଁ ରହି ବସି ଖୁସିରେ ଗଲେ ।

ବେହେରାଙ୍କ ଅକଲ ତ କମ୍ ନୁହେଁ ।



# କାଜି ବିଚାର (୧)

ଜଣେ ଇରାନୀ ସୌଦାଗର ଘୋଡ଼ାପିଠିରେ ଜିନିଷ ଲଦି ଭାର୍ଯ୍ୟାକୁ ସାଙ୍ଗରେ ଧରି ବେପାର କରିବାକୁ ବାହାରିଲା । ସେ ଗୋଟିଏ ଗାଁ'ରେ ପହଞ୍ଚି ଜଣେ କୁମ୍ଭାରର ବାଡ଼ିପଟେ ଆଶ୍ରା ନେଲା । ସେତେବେଳେ କୁମ୍ଭାର ଘରେ ନ ଥିଲା । ସୌଦାଗର ଘୋଡ଼ା ପିଠିରୁ ଜିନିଷ ପତ୍ର ଉତାରି ଦେଇ ଘୋଡ଼ାକୁ ଚରିବାକୁ ଛାଡ଼ିଦେଲା । ଭାର୍ଯ୍ୟାକୁ କୁମ୍ଭାର ପିଣ୍ଡାରେ ବସାଇ ଦେଇ ରୋଷେଇ ପାଇଁ ସଉଦା ଆଣିବାକୁ ବଜାରକୁ ଗଲା । ଘୋଡ଼ାଟି ବୁଲି ବୁଲି ଘାସ ଚରୁଥିଲା । କୁମ୍ଭାର ବାଡ଼ିଆଡ଼େ ଗୁଡ଼ାଏ କଞ୍ଚା ହାଣ୍ଡି, ମାଠିଆ ଖରାରେ ଶୁଖୁଥିଲା । ଘୋଡ଼ାଟା ଚରୁ ଚରୁ କେତେବେଳେ ଆସି ଭୂଇଁରେ ଗଡ଼େଇ ତଡ଼େଇ ହେଲା । ଘୋଡ଼ା ଗଡ଼େଇ ତଡ଼େଇ ହବାରେ କୁମ୍ଭାରର ସବୁତକ ହାଣ୍ଡି ମାଠିଆ ଗୁଣ୍ଡା ହୋଇଗଲା । କେତେବେଳ ଉତାରୁ କୁମ୍ଭାର ଆସି ଦେଖେ ତ, ତା' ହାଣ୍ଡି ମାଠିଆ ସବୁ ଗୁଣ୍ଡା ହୋଇଯାଇଛି । ପିଣ୍ଡାରେ କେଉଁଠାରେ ଗୋଟିଏ ସ୍ତ୍ରୀ ଲୋକ ବସିଛି । ଏହି ସ୍ତ୍ରୀ ଲୋକଟି ହାଣ୍ଡିମାଠିଆ ଭାଙ୍ଗିଛି ବୋଲି ବିଚାରି କୁମ୍ଭାର ରାଗରେ ସେ ସ୍ତ୍ରୀଲୋକକୁ ହଗାଲଗା ମାଡ଼ ଚଢ଼ାଇଲା । ସେ ସ୍ତ୍ରୀଲୋକଟିର ନଅ ମାସ ଗର୍ଭ ହୋଇଥିଲା । କୁମ୍ଭାରର ମାଡ଼ରେ ତା'ର ଗର୍ଭ ନଷ୍ଟ ହୋଇଗଲା । ସେ ମଧ ଚେତା ବୁଡ଼ି ପଡ଼ିଗଲା । କିଛି ସମୟ ପରେ ଇରାନୀ ଆସି ଦେଖେ ତ ସର୍ବନାଶ । ସେ ଭାର୍ଯ୍ୟାଠାରୁ ସବୁ କଥା ବୁଝିନେଇ ଆଉ ରୋଷେଇ କରିବ କ'ଣ, ଭାର୍ଯ୍ୟାକୁ ସାଙ୍ଗରେ ଧରି କାଜିଙ୍କ ପାଖକୁ ଗଲା ।

କାଜି ଇରାନୀଠାରୁ ସବୁ କଥା ବୁଝିନେଇ ସାଙ୍ଗେ ସାଙ୍ଗେ କୁମ୍ଭାରକୁ ତଲବ କଲେ । କୁମ୍ଭାର ପହଞ୍ଚିବାରୁ ତା'ଠାରୁ ସବୁ କଥା ବୁଝିନେଲେ । ସେ ବୁଝିଲେ – କୁମ୍ଭାର ହାଣ୍ଡିମାଠିଆ ଇରାନୀ ସ୍ତ୍ରୀ ଭାଙ୍ଗିନାହିଁ, ଘୋଡ଼ା ଗଡ଼ିବାରେ ଭାଙ୍ଗିଛି । ସୁତରାଂ ଏଥିପାଇଁ ଘୋଡ଼ା ଦୋଷୀ । ପୁଣି କୁମ୍ଭାର ନିର୍ଦ୍ଦୋଷରେ ଇରାନୀ ସ୍ତ୍ରୀକି ମାରିବାରେ ତା'ର ଗର୍ଭ ନଷ୍ଟ ହୋଇଚି । ତେଣୁ ଏଥିପାଇଁ କୁମ୍ଭାର ସମ୍ପୂର୍ଣ୍ଣ ଦୋଷୀ । ଏଥିକି କାଜି ରାୟ ଦେଲେ ଯେ ହାଣ୍ଡି, ମାଠିଆ ଭାଙ୍ଗିବା ଦୋଷରୁ ଘୋଡ଼ାର ଚାରିଖୁରା ହଣାଯିବ ଏବଂ ଗର୍ଭ ନଷ୍ଟ କରିଥିବା ଦୋଷରୁ କୁମ୍ଭାର ଇରାନୀ ଭାର୍ଯ୍ୟାକୁ ପାଖରେ ରଖି ଗର୍ଭ କରାଇ ଇରାନୀକୁ ଫେରାଇଦେବ ।

କାଜିଙ୍କ ବିଚାରରେ ବିଚରା ଇରାନୀ ଥଣ୍ଡା ।
ବୁଝାମଣା କି, ନାହିଁ ନ ଥିବା ବୁଝାମଣା ପରା ।



# କାଜି ବିଚାର (୨)

କାଜି ଅମଳରେ ଜଣେ ପ୍ରଜାର ଗୋଟେ ଷଣ୍ଢ, ଖୋଦ କାଜିଙ୍କର ଷଣ୍ଢ ସଙ୍ଗେ ଲଢ଼ାଲଢ଼ି କରି ତାକୁ ମାରିଦେଲା । ସେ ଆଉ କାହା ଷଣ୍ଢ ନୁହେଁ, କାଜିଙ୍କର ଷଣ୍ଢ । କାଜିଙ୍କର ପୁଣି ଅଜାହିର କ୍ଷମତା । ଏଥିରେ ପ୍ରଜାର ମହାଭୟ ହେଲା । ସେ ସେହି ଭୟରେ ଥରି ଥରି କାଜିଙ୍କ ପାଖେ ହାଜର ହେଲା । ସଲାମ କରି କହିଲା – ହଜୁର । ହଜୁରଙ୍କ ଷଣ୍ଢ ମୋ ଷଣ୍ଢକୁ ମାରିଦେଲା । ପ୍ରଜା କହୁ କହୁ ଭୟରେ ଓଲଟା କହି ପକାଇଲା ।

କାଜି ଯେତେବେଳେ ଶୁଣିଲେ – ନିଜ ଷଣ୍ଢ ଏ ଲୋକର ଷଣ୍ଢକୁ ମାରିଦେଇଛି, ସେତେବେଳେ ବିଚାର କରିବାକୁ ଡେରି ହେଲାନାହିଁ । ସାଙ୍ଗେ ସାଙ୍ଗେ ରାୟ ଦେଲେ –

"ବୟଲ କୋ ବଏଲ୍ ମାରା,
କ୍ୟା ବାତ ତୋମାରା ହାମାରା"

ପ୍ରଜା ତ ଓଲଟା କଥା କହିଥିଲା । ପରେ ତା'ର ଖିଆଲ ହେବାରୁ ପୁଣି କହିଲା – ନାଁ, ହଜୁର । ମୁଁ ଭୁଲ କହିଛି । ହଜୁରଙ୍କ ଷଣ୍ଢ ମୋ ଷଣ୍ଢକୁ ମାରି ନାହିଁ, ମୋ ଷଣ୍ଢ ହଜୁରଙ୍କ ଷଣ୍ଢକୁ ମାରିଦେଇଛି । ଏଥିକି ଧର୍ମାବତାର ଯାହା ବିଚାର କରିବେ ।

ଏଥିରେ କାଜି ଚମକି ଯାଇ ଆଉ ଗୋଟେ କବିତା ଖୋଲି କହିଲେ –

"ଦୋସରି କିତାବ୍ ବୋଲା ଏହୁ,
ବଏଲ୍ କୋ ବଏଲ୍ ମାରା କେଉଁ ।
ଖିଲାକେ ଭୂଷି ବନାୟା ଷଣ୍ଢ,
ବଏଲ୍ କୋ ବଏଲ୍, ତଣ୍ଡ କୋ ତଣ୍ଡ ।"

ଅର୍ଥାତ୍ ଦୋସରା ଆଇନ କହୁଚି ଯେ ଷଣ୍ଢକୁ ଷଣ୍ଢ କାହିଁକି ମାଇଲା ? ଭୂଷି ଖୁଆଇବାରେ ଷଣ୍ଢ ବଢ଼ିଲା । ଏଣୁ ତତେ ଷଣ୍ଢକୁ ଷଣ୍ଢ, ଆଉ ତଣ୍ଡକୁ ତଣ୍ଡ ଦବାକୁ ପଡ଼ିବ । ବିଚରା କାଜିଙ୍କର ଦୋହରି ଆଇନ ଶୁଣି ଥଣ୍ଡା । ଚାରା କ'ଣ ଅଛି । ଷଣ୍ଢକୁ ଷଣ୍ଢ, ତା' ଉପରେ ପୁଅ ତଣ୍ଡକୁ ତଣ୍ଡ ଦେଲା । ଏହାକୁ କହନ୍ତି କାଜିବିଚାର ।



# ଶ୍ରାଦ୍ଧଠଉଁ ସଞ୍ଚାଦିଆ ଟାଣ

ଜଣେ ଗଉଡ଼ର ବାପ ଶ୍ରାଦ୍ଧ ପଡ଼ିଲା । ଏ ଶ୍ରାଦ୍ଧ ପୁଣି ପହିଲି ଶ୍ରାଦ୍ଧ । ଗଉଡ଼ କେବେ ଶ୍ରାଦ୍ଧ କରିନାହିଁ, କି ଶ୍ରାଦ୍ଧ ଦେଖିନାହିଁ । ଶ୍ରାଦ୍ଧ ପାଇଁ ତ ପୁରୋହିତ ଦରକାର । ପୁରୋହିତ ଡକରା ହୋଇ ଆସିଲେ । ଶ୍ରାଦ୍ଧ ଜିନିଷ ସବୁ ପାଖରେ ଥୁଆ ହେଲା । ଗଉଡ଼ ଶ୍ରାଦ୍ଧ କରିବସିଲା । ସେ ତ କେବେ ଶ୍ରାଦ୍ଧ ଦେଖିନାହିଁ । ତେଣୁ ପୁରୋହିତ ଯାହା କହିଲେ, କିଛି ବୁଝିପାରିଲା ନାହିଁ । ପୁରୋହିତ କହିଲେ – ଆରେ ତୋ ଜାଣିବା ଦରକାର ନାହିଁ, ମୁଁ ଯାହା କହୁଛି, ତୁ ସେୟା କହିଲେ ଶ୍ରାଦ୍ଧ ହୋଇଯିବ । ଗଉଡ଼ ପୁରୋହିତଙ୍କର ଏ କଥାକୁ ବେଦର ଗାର କରି ତାଙ୍କ କଥାକୁ ଚାହିଁ ରହିଲା । ସେ ତ ବୁଝିଛି – ପୁରୋହିତ ଯାହା କହିବେ, ସେ ସେୟା କହିବ । ସୁତରାଂ ପୁରୋହିତ ଯେତେବେଳେ କହିଲେ, ତୋ ବାପ ନାଁ କ'ଣ, ଗଉଡ଼ କହିଲା – ତୋ ବାପ ନାଁ କ'ଣ ? ପୁରୋହିତ କହିଲେ ଆରେ ଶଳାଟା । ମୁଁ ପଚାରୁଛି ତୋ ବାପ ନାଁ କ'ଣ ? ସେ ମଧ୍ୟ କହିଲା – ଆରେ ଶଳାଟା । ମୁଁ ପଚାରୁଛି – ତୋ ବାପ ନାଁ କ'ଣ ? ପୁରୋହିତ ରାଗିଯାଇ କହିଲେ, ଆରେ ଶଳା ମୂର୍ଖ । ମୁଁ ପଚାରୁଛି.... ତୋ ବାପ ନାଁ କ'ଣ ? ସେ ସେହିପରି କହିଲା, ଆରେ ଶଳା ମୂର୍ଖ, ମୁଁ ପଚାରୁଛି – ତୋ ବାପ ନାଁ କ'ଣ ? ପୁରୋହିତ ଅଧିକ ରାଗିଯାଇ କହିଲେ – ଶଳାକୁ ବଜେଇବି ଯେ । ସେ ମଧ୍ୟ କହିଲା – ଶଳାକୁ ବଜେଇବି ଯେ । ପୁରୋହିତ ସମ୍ଭାଳି ନ ପାରି, ତା' ଗାଲରେ ଠୋ କରି ଚାପୁଡ଼େ ମାଇଲେ । ସେ ମଧ୍ୟ ପୁରୋହିତଙ୍କ ଗାଲରେ ସେହିପରି ଠୋ କରି ଚାପୁଡ଼େ ମାଇଲା । ଇମିତି ହଉ ହଉ ଦୁହେଁ ଧରାଧରି ମରାମରି ହୋଇ ଓଳିଆଭାଡ଼ି ପର୍ଯ୍ୟନ୍ତ ଗଲେ । ଏପରି ମାଡ଼ପିଟା ହେବାରେ ପଡ଼ିଶା

ଘର ଶୁଣି ଗଉଡ଼ୁଣୀକି ଡାକ ପକାଇଲେ – କିଓ, ତୁମ ଶ୍ରାଦ୍ଧ କେଉଁଯାଏ ଗଲା ? ଗଉଡ଼ୁଣୀ କହିଲା – ଆମ ଶ୍ରାଦ୍ଧ ଓଳିଆଭାଡ଼ି ତଳଯାଏ ଗଲାଣି । ଯା ଶୁଣି ପଡ଼ିଶାଘର ହସି ହସି ଗଡ଼ିଗଲେ । ପୁରୋହିତ ନିର୍ଦ୍ଧୁମ୍ ମାଡ଼ ଖାଇ ଘରକୁ ଗଲେ । ଏତିକିରେ ଶ୍ରାଦ୍ଧ ଶେଷ । ପୁରୋହିତ ଇମିତି ଶ୍ରାଦ୍ଧ କେବେ କରି ନ ଥିଲେ । ଏ ଶ୍ରାଦ୍ଧରେ ପୁଣି ତାଙ୍କ ଦେହମୁଣ୍ଡ ପାଚିଗଲା । ଗାଁ'ଲୋକେ ସବୁ କଥା ଶୁଣି ବଡ଼ ବ୍ୟସ୍ତ ହେଲେ ।

ଶ୍ରାଦ୍ଧ ତ ଯାହା ହେଲା, ସୁତରାଂ ଗଉଡ଼ ତହିଁ ଆର ଦିନ ଗୋଟିଏ ସଞ୍ଜା ସଜାଡ଼ି ପୁରୋହିତଙ୍କ ଗାଁ'କୁ ଗଲା । ଗାଁ' ଲୋକେ ତ ଗଉଡ଼ର ସବୁ କୀର୍ତ୍ତି ଶୁଣିଥିଲେ, ତାକୁ ଯିମିତି ଦେଖିଲେ ପାଞ୍ଚ ସାତ ବଛା ଯୁଆନ ତା' ଉପରେ ଦେଲେ ହଗାଲଗା ମାଡ଼ । ବିଚରା ନିର୍ଦ୍ଧୁମ୍ ଛେଚାଟେ ପାଇ ଉଲୋ ମାଲୋ ହୋଇ ଗାଁ'କୁ ଗଲା । ତାକୁ ବିଥେଇଁ ହେବାର ଦେଖି ଲୋକେ ପଚାରିଲେ – କିରେ । ଇମିତି କାହିଁକି ହେଉଚୁ ! ସେ କହିଲା – କହନା ଭାଇ । ଶ୍ରାଦ୍ଧକୁ ସଞ୍ଜା ବଳକା । ଲୋକେ ସବୁ ଘଟଣା ଶୁଣି କହିଲେ – ସତେ ତ, ଶ୍ରାଦ୍ଧକୁ ସଞ୍ଜା ବଳକା ।



# ଘରଜୋଇଁ ବଡ଼ ନାକରା ଜାତି

ଜଣେ ଲୋକର ଦୁଇଟି ଝିଅ ଥିଲେ । ସେ ଖୋଜି ଲୋଡ଼ି ଦୁଇଟି ଜୋଇଁ କଲା । ଦି' ଜୋଇଁଙ୍କ ନାଁ' ପୁଣି ବନମାଳୀ । ତା'ର ତ ପୁଅ ନ ଥିଲା; ତେଣୁ ବଡ଼ ଜୋଇଁକି ଘରଜୋଇଁ କରି ରଖିଲା । ସାନଜୋଇଁ ଘର ଦୂର ଗାଁ'ରେ । ବଡ଼ ଜୋଇଁ ସବୁବେଳେ ଘରେ ରହିବାକୁ ଶାଶୂ ଶଶୁର, ଗାଁ'ଲୋକେ ସମସ୍ତେ ତାକୁ ବନା, ବନା ବୋଲି ଡାକନ୍ତି । ସେ ତ ସବୁଦିନେ ପୁଅପରି ଘରେ ରହିଲା; ସୁତରାଂ ତା' ପାଇଁ ଅଧିକା କିଛି ରନ୍ଧାବଢ଼ା ହୁଏନାହିଁ । ଶାଗ, କାଞ୍ଜି ଯେଉଁଦିନ ଯାହା ହୁଏ, ସେ ସେୟା ଖାଏ ।

କେବେ କେମିତି ଡକରାଗଲେ ସାନ ଜୋଇଁ ଶଶୁରଘରକୁ ଆସେ । ତା' ପାଇଁ କ୍ଷୀରି, ଖେଚେଡ଼ି, ପିଠା, ପଣା କେତେ କରାହୁଏ । ଶାଶୂ ଶଶୁର ବନମାଳୀ, ବନମାଳୀ ବୋଲି ସ୍ନେହରେ ଘୋରି ପହରି ହୋଇଯା'ନ୍ତି । ବସିବାକୁ ଆସନ, ଶୋଇବାକୁ ଖଟପଲଙ୍କ ଦିଆଯାଏ ।

ସାନ ଜୋଇଁ ଖାଇବାକୁ ଥାଳି ଚାରିପାଖେ ତରକାରି ଗିନା ପୂର୍ଣ୍ଣ ହୋଇଯାଏ । ବଡ଼ ଜୋଇଁ ସେଦିନ ମଧ୍ୟ ମୁଠେ ଭଲ କରି ଖାଇବାକୁ ପାଏନାହିଁ । ପୁଣି ବନମାଳୀ ଥିବା ପର୍ଯ୍ୟନ୍ତ ବନା ଶୋଇବାକୁ ଘରେ ଥାନ ପାଏ ନାହିଁ । କାହିଁକି ନା, ଶଶୁରଙ୍କର ଘର ଅଳ୍ପ । ବନା ଯାଗା ନ ପାଇ ସନ୍ତରା ମସିଣା ଖଣ୍ଡେ କାଖରେ ଜାକି ହାତରେ ଗୋଟେ ବଳିତା ଧରି ଶୋଇବ ବୋଲି ଯା ପିଣ୍ଡା, ତା' ପିଣ୍ଡା ଖୋଜିବୁଲେ । ଜୋଇଁର ଶଶୁରଘରେ ଯାଠାରୁ ବଳି ଆଉ କି ହୀନାବସ୍ଥା ହୋଇପାରେ ?

ଏହିପରି ଅବସ୍ଥା ହେବାରୁ ବନା କହିଲା –

ଦୂର ବନମାଳୀ ନିକଟ ବନା,
କାହିଁ ଚାରି କାହିଁ ଚଉଦ ଗିନା ।
କାଖେ କତରା ହାତରେ ବତି,
ବନା ବୁଲୁଥାଇ ଅନ୍ଧାର ରାତି,
ଘରଜୋଇଁ ବଡ଼ ନାକରାଜାତି ।



# ଦିଶୁ

ଜଣେ ଜୋଇଁ ଶଶୁରଘରକୁ ଯାଇଥିଲା । ଜୋଇଁଟା ଯିମିତି ମୂର୍ଖ, ସେମିତି ଓଲୁ । ଶଶୁରଘରେ ଦିନେ ଦୁଇ ଦିନ ରହିବା ପରେ ଜୋଇଁ ଗାଁ'କୁ ଆସିବାକୁ ବାହାରିଲା । ଜୋଇଁ ବାହାରିଲା ବେଳକୁ ଶାଶୂ ସ୍ନେହ କରି କିଛି ଜଳଖିଆ, ତା' ସାଙ୍ଗେ ଖଣ୍ଡେ ଓଲୁଅ ଗୋଟିଏ ପୋଟଳାରେ ବାନ୍ଧି ପୋଟଳାଟି ଜୋଇଁକି ଦେଇ କହିଲେ – ବାଟରେ ଭୋକ ହେଲେ, ଏଥିରୁ ଦିଶୁ ଖାଇବ, ବାକିତକ ଘରକୁ ନେବ । ଜୋଇଁ ପୋଟଳା ଧରି ବିଦାୟ ହେଲା । ଯାଉ ଯାଉ ବାଟରେ ଭୋକ ହେବାରୁ ପୋଟଳା ଫିଟେଇଲା । ଫିଟାଇ ଦେଖିଲା – ସେଥିରେ ଗୁଡ଼ିଏ ଜଳଖିଆ ଅଛି । ସେ ଓଲୁଅ କେବେ ଦେଖିନାହିଁ, କି ଚିହ୍ନିନାହିଁ । ସେଇଥିରୁ ତା' ଭିତରେ ଥିବା ଓଲୁଅ ଖଣ୍ଡ ଚିହ୍ନିପାରିଲା ନାହିଁ । ଭାବିଲା – ତେବେ ଏଇଟା କ'ଣ ? ହଁ, ହଁ, ମନେପଡ଼ିଲା । ଶାଶୂ ତ କହିଥିଲେ – ଏଥିରୁ ଦିଶୁ ଖାଇବ । ତେବେ ସେଇ ଦିଶୁ ଇଏ । ଶାଶୂ ତ ସ୍ନେହରେ ଦିଶୁ ଦେଇଛନ୍ତି । ନିଶ୍ଚେ ଯେ ଭଲ ଜିନିଷ ହୋଇଥିବ । ଯା ବିଚାରି ଜଳଖିଆ ନ ଖାଇ ଭଲ ଜିନିଷ ଖାଇବ ବୋଲି ଓଲୁଅ ଖଣ୍ଡେ ଭାଙ୍ଗି ଭଡ଼ଭାଡ଼ କରି ଚୋବାଇଲା । ସେ ଆଉ କିଛି ନୁହେଁ, ଓଲୁଅ ପୁଣି ବଣ ଓଲୁଅ । ବିଚରା ଯାଏ କୁଆଡ଼େ ? ଓଠ, ଜିଭ, କଣ୍ଠ, ସମସ୍ତେ କୁଣ୍ଡେଇ ହେଲେ । ବିଚରା ଇମିତି ଛଟପଟ, କଲବଲ ହେଲା ଯେ ପ୍ରାଣ ହରାଇଦେବାକୁ ମନ ହେଲା । ସେ ରାଗରେ ଗୋଟାକ ସାତଟା ହୋଇ ଶାଶୂକୁ ଅଭାଷା ଦୁର୍ଭାଷା କରି ଯାହା ଗାଳିଦେଲା, ତାହା ତୁଣ୍ଡରେ ଧରିହେବ ନାହିଁ । କେତେବେଳ ଉତ୍ତାରୁ କଣ୍ଡୁ ଟିକିଏ କମିଯିବାରୁ ଘରକୁ

ଗଲା । ଘରେ ପହଞ୍ଚି ଶାଶୂ ରାଗତକ ଭାର୍ଯ୍ୟା ଉପରେ ସାଧିଲା । ଯାହା ତ ଶୋଧିଲା ଶୋଧିଲା ପଛକୁ ତାକୁ ମାଡ଼ିବସି କିଛି ଦିଶୁ ଖୁଆଇଲା । ଭାର୍ଯ୍ୟା ଦିଶୁ ଖାଇ କଲବଲ ହେବାରେ ଲୋକେ ଜାଣିଲେ । ସମସ୍ତେ ମୂଳକଥା ବୁଝି କହିଲେ – ହଇରେ ମୂର୍ଖ । ଦିଶୁର ଅର୍ଥ ଓଲୁଅ ବୁଝି ନିଜେ ଖାଇ ଯାହା ତ ଭୋଗିଲୁ ଭୋଗିଲୁ, ପଛକୁ ଭାର୍ଯ୍ୟାଟାକୁ ଗୁଡ଼ାଏ ଭୋଗାଇଲୁ ? ଧିକ୍କାର ହେଉ ତୋ ଜୀବନ ।

ଜୋଇଁ କି ? ଯୋଗ୍ୟ ଜୋଇଁଟିଏ ନା ।



# ଜୋଇଁଙ୍କ ସନ୍ଧ୍ୟା

ଜଣେ ଜୋଇଁଙ୍କର ଶଶୁରଘରୁ ଡାକରା ଆସିଲା । ସେ ଲୁଗାପଟା ପିନ୍ଧି ଶଶୁରଘର ବେଶରେ ବାହାରିଲା । ଶଶୁରଘରେ ପହଞ୍ଚିଲା ବେଳକୁ ଠିକ୍ ସନ୍ଧ୍ୟା । ଜୋଇଁଙ୍କ ପାଇଁ ରନ୍ଧାବଢ଼ାର ବ୍ୟବସ୍ଥା ହେଲା । ଜୋଇଁ ତ ପୁଣି ବ୍ରାହ୍ମଣ । ସନ୍ଧ୍ୟାବେଳେ ସନ୍ଧ୍ୟା କରିବା କଥା । ଶାଶୂ ବୁଢ଼ୀ ସାନପୁଅ ହାତେ ଗୋଡ଼ ଧୋଇବାକୁ ଡାଳେ ପାଣି, ପିନ୍ଧିବାକୁ ଗୋଟିଏ ମଠା ପଠାଇଦେଲେ । ଜୋଇଁ ଏସବୁ ଦେଖି ପଚାରିଲେ – ଯାକୁ ସବୁ କାହିଁକି ଆଣିଲ । ଶଳା କହିଲା – ଖାଇବାକୁ ହୋଇଗଲାଣି, ସନ୍ଧ୍ୟା କରିବ ପରା । ଜୋଇଁ ଗଣ୍ଡମୂର୍ଖ, ସନ୍ଧ୍ୟା ଫନ୍ଧ୍ୟା କିଛି ଜାଣେ ନାହିଁ । ସେ ଭାବିଲା – ଏ ଗାଁ'ରେ ତେବେ ଝାଡ଼ା ଫେରିବାକୁ ସନ୍ଧ୍ୟା କହୁଥିବେ । ଯା ବିଚାରି ମଠାଟି ପିନ୍ଧି ଡାଳଟି ଧରି ଶଳାକୁ ପଚାରିଲା – କେଉଁଠି ସନ୍ଧ୍ୟା କରିବା । ଶଳା ଜୋଇଁକି ସାଙ୍ଗରେ ନେଇ ସନ୍ଧ୍ୟା କରିବା ଜାଗା ଦେଖାଇଦେଲା । ସେ ଜାଗାଟିରେ ପାଟପଥର ପଡିଛି, ତଳକୁ ପାଣି ଗଡ଼ିଯିବାକୁ ନାଳଟିଏ ହୋଇଚି । ଜୋଇଁ ଜାଗା ଦେଖି ସାରିଲା ପରେ ଶଳାକୁ କହିଲା – ତୁମେ ଯାଅ, ମୁଁ ସନ୍ଧ୍ୟା ସାରିଯାଉଚି । ଶଳା ଚାଲିଗଲା ପରେ ଜୋଇଁ ବିଚାରିଲା – ମୁଁ ଯାହା ଅନୁମାନ କରୁଥିଲି, ତାହା ଠିକ୍ । କାହିଁକି ନା ଝାଡ଼ା ଆସିବାକୁ ପାଟ ପଥରଗୁଡ଼ିଏ ପଡ଼ିଚି, ମୂତ ବୋହିଯିବାକୁ ନଳାଟିଏ ହୋଇଚି । ଯା ବିଚାରି ସେଠାରେ ଝାଡ଼ା ଫେରି ଧୂଆଧୋଇ ହୋଇ ଖାଇବାକୁ ଗଲେ । ଜୋଇଁ ସେଠାରେ ଏପରି ସନ୍ଧ୍ୟା କରିବା କଥା କେହି ଜାଣନ୍ତି ନାହିଁ । ଏହାପରେ ଶଶୁର, ଶଳାମାନେ ସନ୍ଧ୍ୟା କରିବାକୁ ଗୋଟିକ ପରେ ଗୋଟିଏ ସେଠାକୁ ବାହାରିଲେ । ଯେ ବାହାରିଲା – ଜୋଇଁ ତାକୁ କହିଲେ – ହାଁ, ହାଁ ସିଆଡ଼େ ଯାଅନାହିଁ । ସେଠାରେ ସନ୍ଧ୍ୟା ହୋଇଚି ।

ଶାଶୂଘର ଲୋକେ ଏକଥା କିଛି ବୁଝିପାରିଲେ ନାହିଁ । ଯାଇ ଦେଖନ୍ତି ତ ଯୋଗ୍ୟ ଜୋଇଁ ସେଠାରେ ଗଦାଟିଏ ବସାଇ ଦେଇଛନ୍ତି । ଏହା ଦେଖି ଶଳାମାନେ ପଚାରିଲେ – କିଓ, ଯେ କ'ଣ ତମ ଗାଁ'ରେ ସନ୍ଧ୍ୟା । ସାବାସ ।

ଜୋଇଁ ଆଉ କ'ଣ କରିବେ । ଲାଜରେ ତହିଁ ଆରଦିନ ରାତି ନ ପାହୁଣୁ କାହାକୁ କିଛି ନ କହି ଗାଁ'କୁ ଚମ୍ପଟ ।

ଏଇ ହେଲା ଯୋଗ୍ୟ ଜୋଇଁଙ୍କ ସନ୍ଧ୍ୟା ।



# ତନ୍ତୀଙ୍କ କୀର୍ତ୍ତନ

ଗୋଟିଏ ହାଟୁଆ ଗାଁ' ଥିଲା । ସେଥିରେ ତେଲୀ, ତୂଳାଭିଣା, କଂସାରୀ, ତନ୍ତୀ ଏହିପରି ଗୁଡ଼ିଏ ପାଟକ ଜାତି ବାସ କରୁଥିଲେ । ଉତ୍ସବ ପର୍ବରେ ସମସ୍ତେ ମିଶି କୀର୍ତ୍ତନ କରନ୍ତି; ମାତ୍ର ତନ୍ତୀକି ମିଶାନ୍ତି ନାହିଁ । ଏଥିରେ ମିଶିବାକୁ ତନ୍ତୀକୁଳ ବହୁତ ଯୋଗାଡ଼ କଲେ; ମାତ୍ର କିଛି ଫଳ ହେଲାନାହିଁ । ଏଥିରେ ତନ୍ତୀମାନଙ୍କର ରାଗ ବଢ଼ିଗଲା । ତାଙ୍କ ନିଜର ସଂକୀର୍ତ୍ତନ ଦଳଟିଏ ଗଢ଼ିବାକୁ ତନ୍ତୀଯାକ ସବୁ ବିଚାର କଲେ । ସେଥିକି ସଂକୀର୍ତ୍ତନ ତାଙ୍କୁ କାହାକୁ ଜଣାନାହିଁ । ସମସ୍ତେ ବସି ବିଚାରକଲେ – ସମସ୍ତେ ଚାନ୍ଦା ଭେଦା ଦିଅ, ବାଛି ବୁଝି ଗୋଟେ ସଂକୀର୍ତ୍ତନ କିଣିଆଣିବା । ପଇସା ଖର୍ଚ୍ଚ କଲେ କ'ଣ ସଂକୀର୍ତ୍ତନ ମିଳିବ ନାହିଁ । ତନ୍ତୀ ବୁଦ୍ଧି ତ, ଟଙ୍କା ପଇସା ଗଣ୍ଠିକରି ଚାରି ଛଅ ଜଣ ସଂକୀର୍ତ୍ତନ କିଣିବାକୁ ଗାଁ' ଗାଁ' ବୁଲିଲେ । ସଂକୀର୍ତ୍ତନ ତ କିଣାଯିବା ଜିନିଷ ନୁହେଁ, ଯେ ଶୁଣିଲା, ସେ ହସିଲା । ଲୋକେ ବୁଝିଲେ – ଏଗୁଡ଼ାକ ତୁଚ୍ଛା ଓଲୁ । ସେମାନେ ଇମିତି କେତେ ଗାଁ' ବୁଲି ବୁଲି ଆଉ ଗୋଟେ ଗାଁ'ରେ ପହଞ୍ଚିଲେ । ସେ ଗାଁ'ରେ ଜଣେ ଜାଲିଆ ଫିସାଦିଆ ଲୋକ ଥିଲା । ସେ ଦେଖିଲା ଯେ ଏ ଓଲୁଗୁଡ଼ାଙ୍କୁ ସହଜରେ ଠକି ହେବ । ସେ ତାଙ୍କ ପାଖକୁ ଯାଇ କହିଲା – କିଓ, ସଂକୀର୍ତ୍ତନ ଖୋଜୁଚ ଯେ ଟଙ୍କା ପଇସା ଦେଇପାରିବ ତ ? ତନ୍ତୀ କହିଲେ – ତୁମେ ଟଙ୍କା ପାଇଁ ଚିନ୍ତା କରନାହିଁ । ଯେତେ ଟଙ୍କା ପଡ଼ିବ, ଆମେ ଦବୁ । ତୁମେ ଭଲ ସଂକୀର୍ତ୍ତନ ଦେଇପାରିବ ତ ?

ଜାଲିଆ କହିଲା – ପରଖ କରିନିଅ । ଭଲ ନ ହେଲେ ନବ କିଆଁ ? ସେମାନେ ସେଥିରେ ରାଜି ହେଲେ । ଜାଲିଆ କହିଲା – ରାତିଟେ ନ ରହିଲେ ହେବନାହିଁ । ସେମାନେ ରାଜି ହୋଇ ରାତିକ ରହିଲେ । ଜାଲିଆ ସେଇ ରାତି ଭିତରେ ଗୋଟେ ଲମ୍ବା ବାଉଁଶନଳ ଠିକଣା କରି ଗୁଡ଼େ ବିରୁଡ଼ି ଧରିଆଣି ସେଥିରେ ଭର୍ତ୍ତି କଲା । ନଳମୁହଁରେ ଗୋଟେ ଶକତ ଚୁଣ୍ଟାମାରି ନଳଟାକୁ ଧରି ତନ୍ତୀଙ୍କ ପାଖେ ପହଞ୍ଚିଲା । ବିରୁଡ଼ିଗୁଡ଼ାକ ନଳଭିତରେ ଭଁ ଭଁ ହଉଥା'ନ୍ତି । ଜାଲିଆ ସେ ନଳଟାକୁ ସବୁ ତନ୍ତୀର କାନ

ପାଖେ ଧରିବାରେ ତନ୍ତୀସବୁ ସେ ଭଁ ଭଁ ଶବ୍ଦ ଶୁଣି କହିଲେ – ବାଃ, ଯା ନା ଯେ ସଂକୀର୍ତ୍ତନ । ଜାଲିଆ କହିଲା – ୟେ କ'ଣ ଶୁଣୁଚ, ଗାଁ'କୁ ଗଲେ ଯାଠାରୁ ବଳକା ଶୁଣିବ । ତା'ପରେ ଦରଦାମ ହେବାରେ ଜାଲିଆ ତିରିଶ ଟଙ୍କା ପାଇଲା । ତନ୍ତୀସବୁ ବିରୁଡ଼ି ନଳ ଘେନି ଗାଁ'କୁ ବାହାରିଲେ । ବିଦାୟ ବେଳେ ଜାଲିଆ କହିଲା – ଯେଉଁଦିନ ଜାକଯମକ ସଂକୀର୍ତ୍ତନ ଶୁଣିବାକୁ ମନ ହବ, ସେଦିନ ଗାଁ'ର ମୁଖିଆ ମୁଖିଆ ଲୋକ ଡାକିବ । ଘର ଭିତରେ ଭଲ ଭଲ ଆସନ ପକାଇବ । ସମସ୍ତେ ଚୁପଚାପ୍ ବସିଗଲା ପରେ ଦୁଆର ସବୁ କିଳିଦେଇ ନଳରୁ ଚୁଣ୍ଟା କାଢ଼ିଦବ । ତେବେଯାଇ ସଂକର୍ତ୍ତନର ମଜା ପାଇବ, ସେଇଦିନ ଯାଇ ତୁମ ପରିଶ୍ରମ ସାର୍ଥକ ହେବ ।

ତନ୍ତୀଯାକ ଭାରି ଖୁସିହୋଇ ସଂକୀର୍ତ୍ତନ ନଳଧରି ଗାଁ'ରେ ପହଞ୍ଚିଲେ । ଆଉ ବିଳମ୍ବ ନ କରି ତହିଁ ଆର ଦିନ ସଂକୀର୍ତ୍ତନର ଯୋଗାଡ଼ କରି ଦେଲେ । ଭାଗବତ ଘରେ ଲମ୍ବା ଚୌଡ଼ା ଆସନମାନ ପଡ଼ିଗଲା । ଗାଁ'ର ମୁଖିଆ ମୁଖିଆ ବହୁତ ଲୋକଙ୍କୁ ନିମନ୍ତ୍ରଣ ହେଲା । କଅଣ ଗୋଟାଏ ନୂଆ ସଂକୀର୍ତ୍ତନ ଆସିଚି ବୋଲି ବହୁତ ଲୋକ ଆଗ୍ରହରେ ରୁଣ୍ଡ ହେଲେ । ଭାଗବତ ଘରେ ଏତେ ଲୋକ ହେଲେ ଯେ ସୋରିଷ ପକାଇବାକୁ ଆଉ ଜାଗା ରହିଲା ନାହିଁ । ଲୋକେ ବସିଯିବା ପରେ ସଂକୀର୍ତ୍ତନ ନଳ ଅଣାଗଲା । ଭାଗବତ ଘରର ଦୁଆର ଝରକା ସବୁ ବନ୍ଦ କରାଗଲା । ଜଣେ ପୁରୁଣା ଲୋକ ସଂକୀର୍ତ୍ତନ ନଳଟି ଧରି ବହୁ କଷ୍ଟରେ ସେଥିରୁ ଚୁଣ୍ଟାଟି ବାହାର କଲା । ଯିମିତି ଚୁଣ୍ଟା ବାହାରିଚି, ସିମିତି ସାଙ୍ଗେ ସାଙ୍ଗେ ପଣ ପଣ ବିରୁଡ଼ି ଲୋକଙ୍କୁ କାମୁଡ଼ିଲେ । ବିରୁଡ଼ି କାମୁଡ଼ା, କମ୍ କାମୁଡ଼ା ନୁହେଁ । ବିରୁଡ଼ି କାମୁଡ଼ିଲେ ଚାରିଦିନରେ ସୁଦ୍ଧା ବିନ୍ଧା ଛିଟିକା ଛାଡ଼େ ନାହିଁ । କାମୁଡ଼ିବା ଜାଗା ଫୁଲିଯାଏ । ଲୋକେ ଏ କାମୁଡ଼ାରେ କଲବଲ ହୋଇ ଦୁଆର ଫିଟାଇ ପ୍ରାଣ ବିକଳରେ ଯେ ଯୁଆଡ଼େ ପଳେଇଲେ । ତନ୍ତୀ ପଂଝା କାଳକାଳକୁ କୀର୍ତ୍ତି ରଖିଗଲେ । କଅଣ କରିବେ, ତନ୍ତୀ ବୁଦ୍ଧି ତ, କପାଳ ଆଦରି ରହିଲେ । ଏତିକିରେ କୀର୍ତ୍ତନ ଶେଷ ।



# ଆଚ୍ଛା, ଆପଣଙ୍କ ସ୍ତ୍ରୀ ମତେ ଛାଡ଼ି ଆଉ କାହାକୁ ବିବାହ କରିପାରେ କି ?

ଗୋଟିଏ ଘରେ ଦୁଇଟି ଭାଇ ଥିଲେ । ବଡ଼ ଭାଇର ଭାର୍ଯ୍ୟା ଥିଲା । ସାନ ଭାଇ ବିବାହ କରି ନ ଥିଲା । କେତେକାଳ ପରେ ରୋଗବ୍ୟାଧିରେ ବଡ଼ଭାଇ ମରିଗଲା । ସେ କୁଳରେ ଦ୍ୱିତୀୟହେବା ପ୍ରଥା ଥିଲା । ସାନଭାଇ ଭାଉଜକୁ ଦ୍ୱିତୀୟ ହେବା ଇଚ୍ଛା କଲା; ମାତ୍ର ଭାଉଜର ମନକୁ ନ ପାଇବାରୁ ସେ ଦିଅରକୁ ଛାଡ଼ି ଅନ୍ୟକୁ ସ୍ୱାମୀ କରିବାକୁ ଖୋଜିଲା । ଦିଅର ଏକଥା ଜାଣିପାରି ଜାତିରେ ଏ କଥା ପକାଇଲା; ମାତ୍ର ଜାତିଭାଇ ତାହା ତୁଟାଇ ପାରିଲେ ନାହିଁ । ତା'ପରେ ସେ ସିଧା ସିଧା ସେ ରାଜ୍ୟର ଦିଆନଙ୍କ ପାଖକୁ ଗଲା ।

ଦିଆନଙ୍କୁ କହିଲା – ମୋର କିଛି ଗୁହାରି ଅଛି । ହଜୁର ଧର୍ମାବତାର, ମୋ କଥା ଶୁଣି ମତେ ନ୍ୟାୟ ଦିଅନ୍ତୁ ।

ଦିଆନ କହିଲେ – ହଉ, କି କଥା କହ କହ ।

ସେ କହିଲା – ହଜୁର ! ମନେ କରନ୍ତୁ – ହଜୁର ମୋର ବଡ଼ ଭାଇ, ମୁଁ ହଜୁରଙ୍କର ସାନ ଭାଇ । ହଜୁରଙ୍କର ଭାର୍ଯ୍ୟା ମୋ ଭାଉଜ । ହଜୁର୍ ଯେବେ ମରିଯା'ନ୍ତି, ତେବେ ମୋ ଭାଉଜ ତ ଦ୍ୱିତୀୟ ହେବ । ଆଜ୍ଞା, ମୁଁ ପଚାରୁଚି, ଦିଅର ଥାଉ ଥାଉ, ସେ ମତେ ଛାଡ଼ି ଆଉ କାହାକୁ ବିବାହ କରିପାରେ କି ? କଥା ଏତିକି ।

ଦିଆନଙ୍କ ଭାର୍ଯ୍ୟା ଘର ଭିତରେ କବାଟ ଆଢୁଆଳରେ ରହି ଏ ସବୁ ଶୁଣୁଥିଲେ । ଏହା ଶୁଣି ତାଙ୍କ ଦେହରେ ଛୁରି ଭୁଷି ହୋଇଗଲା । ସେ ରାଗରେ ସାଙ୍ଗେ ସାଙ୍ଗେ ଦିଆନଙ୍କୁ ଡକାଇ କହିଲେ – ଏ ଲୋକର ଏଡ଼େ ସାହସ ସେ କହିବ, ତମର ଅମଙ୍ଗଳ କଥା ? ମୁଁ ପୁଣି ତା'ର ଭାର୍ଯ୍ୟା ହେବି । ତା'ର ଏଡ଼େ ବହପ । ତାକୁ ସାଙ୍ଗେ ସାଙ୍ଗେ ହାତକଡ଼ା ଦେଇ ଜେଲ ପଠାଅ । ଏକଥା ଆଗ କର । ତା'ଛଡ଼ା ବ୍ରାହ୍ମଣ ଡକାଇ ଦାନପୁଣ୍ୟ କର । ଏହା ନକଲେ ମୁଁ ଅନ୍ନ ଛୁଇଁବି ନାହିଁ ।

ଦିଆନ କଅଣ କଲେ, କେଜାଣି ।



# ଭାଗ ଗୋଦାମ

ଚାରିଜଣ ଲୋକ ଚାରି ଭାଗରେ ଗୋଟିଏ ଗୋଦାମ କଲେ । ଗୋଦାମର ସବୁ ଜିନିଷରେ ସମସ୍ତଙ୍କର ସମାନ ଅଧିକାର ରହିଲା । ସେ ଗୋଦାମରେ ମୂଷା ମାରିବାକୁ ବିରାଡ଼ିଟିଏ ପୋଷି ରଖିଥିଲେ । ସମସ୍ତଙ୍କ ଧନରେ ତ ବିରାଡ଼ିଟି ପୋଷା ହୋଇଥିଲା; ତେଣୁ ବିରାଡ଼ିରେ ମଧ୍ୟ ସମସ୍ତଙ୍କର ଚାରିପଣ ଭାଗ ହେଲା । ସେଥିଯୋଗୁଁ ଜଣେ ଜଣେ ବିରାଡ଼ିର ଗୋଟେ ଗୋଟେ ଗୋଡ଼ ଆଦରି ନେଇଥା'ନ୍ତି । ଯାହା ଭାଗରେ ଯେଉଁ ଗୋଡ଼ ପଡ଼ିଲା ସେ ସେହି ଗୋଡ଼କୁ ସଫାସୁତୁରା କରେ, ଆଉଁସା ପାଉଁସା କରେ, ଘୁଙ୍ଗୁର ପିନ୍ଧାଏ, ଏହିପରି ଯେ ଯେତେ ଯତ୍ନ କରି ପାରିଲା ।

ବିରାଡ଼ିଟା ସବୁବେଳେ ଉଞ୍ଚା ଜାଗାରେ ଶୁଏ । ଦିନେ ସେ ଉଞ୍ଚା ଜାଗାରୁ ଡେଇଁ ପଡ଼ିବାରୁ ତା'ର ଗୋଟେ ଗୋଡ଼ ଛୋଟା ହୋଇଗଲା । ଯାହା ଭାଗରେ ସେ ଗୋଡ଼ଟା ପଡ଼ିଥିଲା, ସେ ବଡ଼ ହଇରାଣ ହେଲା । ସେ ଗୋଡ଼ଟା କିପରି ଭଲ ହେବ, ତା'ର ରାତିଦିନ ଚିନ୍ତା ହେଲା । କିଏସେ କହିବାରୁ ସେ ସେଥିରେ କିରୋସିନି କନା ଖଣ୍ଡିଏ ବାନ୍ଧିଦେଲା । ଭାଗୁଆଳୀମାନେ ରାତିରେ ବିକ୍ରିବଟା ସାରି ଗୋଦାମ ବନ୍ଦ କରି ଯେଝା ଘରକୁ ଗଲେ । ବିରାଡ଼ିଟି ଗୋଦାମରେ ରହିଲା । ବିରାଡ଼ିଗୁଡ଼ାକ ଉଷୁମୁକୁ ଭଲ ପାଆନ୍ତି । ସେଦିନ ସନ୍ଧ୍ୟାବେଳରେ ସେ ଘରେ ରନ୍ଧାବଢ଼ା ହୋଇଥିଲା । ଗୋଦାମ ବନ୍ଦ ହେବାପରେ ଛୋଟା ବିଲେଇ ଛୋଟେଇ ଛୋଟେଇ ଯାଇ ଚୁଲିମୁଣ୍ଡରେ ଶୋଇଲା । ସେତେବେଳେ ଚୁଲିରେ ନିଆଁ ଡହକୁଥାଏ । ସେ ରାତିରେ ଛୋଟା କେତେବେଳେ ଚୁଲି ଆଡ଼କୁ ତା' ଛୋଟା ଗୋଡ଼ଟା ଲମ୍ବେଇ ଦେଇଛି । ସେ ଗୋଡ଼ରେ ତ କିରୋସିନି କନା ଗୁଡ଼ିଆ ହୋଇଥିଲା । କିରୋସିନି ତ ନିଆଁକୁ ବାଇ । ଯେମିତି ଗୋଡ଼ଟା ନିଆଁରେ ଲାଗିଯାଇଛି, ସେମିତି ସାଙ୍ଗେ ସାଙ୍ଗେ ଚଟ୍‌କିନି ସେ କିରୋସିନି କନାକୁ ନିଆଁ ଧରିପକାଇଲା । ଯେତେବେଳେ ସେ କନା ଦାଉଦାଉ ଜଳିଲା, ସେତେବେଳେ ଛୋଟା ଯାଏ କୁଆଡ଼େ ? ସେ ଜୀବନ କଲବଲରେ

ଗୋଦାମ ଘରକୁ ଦଉଡ଼ି ଯାଇ ଗୋଟେ ତୁଳା ବସ୍ତା ଉପରେ ଚଢ଼ିଯାଇ ରଡ଼ିଲା । ନିଆଁ ତ ତୁଳାକୁ ବାଇ, ସାଙ୍ଗେ ସାଙ୍ଗେ ତୁଳା ବସ୍ତାକୁ ନିଆଁ ଧରିନେଲା । ତା'ପରେ ପ୍ରବଳ ନିଆଁ ହେବାରେ ତମାମ ଗୋଦାମ ପୋଡ଼ି ଭସ୍ମ ହୋଇଗଲା । ସକାଳେ ଭାଗୁଆଳୀମାନେ ଦେଖନ୍ତି ତ ଗୋଦାମରେ ଆଉ କଡ଼ାକର ଜିନିଷ ନାହିଁ । ଯା ଦେଖି ସମସ୍ତେ ମୁଣ୍ଡରେ ହାତ ଦେଲେ । ଘରପୋଡ଼ିର କାରଣ ଖୋଜିବାରେ ଜଣାଗଲା – ଛୋଟା ବିରାଡ଼ିର ଗୋଡ଼ ଘରପୋଡ଼ିର କାରଣ । ତା' ଛୋଟା ଗୋଡ଼ରେ ଯେବେ ତେଲକନା ନ ଥାଆନ୍ତା, ତେବେ ଏ ଦୁର୍ଘଟଣା ହୋଇ ନ ଥାନ୍ତା । ସିଦ୍ଧାନ୍ତ ହେଲା – ଛୋଟା ଗୋଡ଼ର ଅଂଶୀଦାରୀ ଏ ସମସ୍ତ କ୍ଷତିପୂରଣ ପାଇଁ ଦାୟୀ । ଛୋଟା ଗୋଡ଼ବାଲା ସେଥିରେ ରାଜି ନ ହେବାରୁ ଭାଗୁଆଳୀମାନେ ରଜାଙ୍କ ପାଖେ ନାଲିସ କଲେ ।

ସେ ଦେଶର ରଜା ବିଚାର କରିବାରେ ବଡ଼ ବିଚକ୍ଷଣ । ସେ ଦରଖାସ୍ତରୁ ସବୁ ବୁଝିନେଇ ରାୟ ଦେଲେ – ବିରାଡ଼ି ଛୋଟା ଗୋଡ଼ରେ ଚାଲିପାରୁ ନ ଥିଲା, ଆଉ ତିନି ଗୋଡ଼ରେ ଚଳାଚଳ ହେଉଥିଲା । ସେ ତିନିଗୋଡ଼ ଛୋଟା ହୋଇଥିଲେ ମୋଟେ ଗୋଦାମକୁ ଯାଇପାରି ନ ଥା'ନ୍ତା । ତାହା ହୋଇଥିଲେ ଗୋଦାମ ପୋଡ଼ିଯାଇ ନ ଥା'ନ୍ତା; କିନ୍ତୁ ସେ ତିନିଗୋଡ଼ରେ ଗୋଦାମକୁ ଯାଇପାରିଛି, ତେଣୁ ଗୋଦାମ ଘର ପୋଡ଼ିଛି । ଛୋଟା ଗୋଡ଼ ଗୋଦାମ ପୋଡ଼ିର କାରଣ ନୁହେଁ । ଭଲ ତିନିଗୋଡ଼ ଗୋଦାମ ପୋଡ଼ିର କାରଣ । ତେଣୁ ଭଲ ତିନି ଗୋଡ଼ବାଲା ଗୋଦାମପୋଡ଼ି କ୍ଷତି ପାଇଁ ଦାୟୀ । ଏଣୁ ସେହିମାନେ ଛୋଟା ଗୋଡ଼ବାଲାକୁ ତା'ର ଚାରିପଣ ଭାଗଦେବାକୁ ବାଧ୍ୟ ।

ରଜାଙ୍କର ହୁକୁମ, ଏଥିରେ ହୁଁ ହୁଁ କେହି ହୋଇପାରିଲେ ନାହିଁ । କଅଣ କରିବେ ? ଘରଦ୍ୱାର ବିକି ତିନିହେଁ ବାଣ୍ଟିକରି ଛୋଟା ଗୋଡ଼ବାଲାକୁ ତା' ଚାରିପଣ ଦେଲେ । କାହାକୁ ଆଉ କହିବେ ? କାନମୁଣ୍ଡ ଆଉଁସି ତୁନି ହୋଇ ରହିଲେ ।

ଏ କ'ଣ କମ୍ ନ୍ୟାୟ ।



# ବୋହୂ ବାବାଜି

ଜଣେ ଭଦ୍ରଲୋକର ବୋହୂଟିଏ ନୂଆ ହୋଇ ଆସିଥାଏ । ଦିନେ ସେ ବଡ଼ିସକାଳୁ ପୋଖରୀକୁ ଗାଧୋଇଗଲା । ନୂଆ ଭୁଆସୁଣୀଟେ, ଏକୁଟିଆ ତ ଯିବ ନାହିଁ, ସାଙ୍ଗରେ ପଡ଼ିଶାଘର ଝିଅକୁ ନେଲା । ସେଦିନ ସେ ବାଟରେ ଗୋଟିଏ ବାବାଜିକି ଦେଖିଲା । ବାବାଜିଟି ବୁଢ଼ା ନୁହେଁ, ଭେଣ୍ଡା । ବୋହୂଟି ତାକୁ ଭେଣ୍ଡା ବୟସରେ ବାବାଜି ହେବାର ଦେଖି କହିଲା –

ଅକାଳ ବୈଷମ ସକାଳେ ଦେଖା ।
ବାବାଜି କହିଲା – ପଥ ବହୁ ଦୂର ।
ବୋହୂ କହିଲା – ତରଙ୍ଗ ତ ବଡ଼ ଜୋର୍
ବାବାଜି କହିଲା – ନାବିକ ବଡ଼ ଧୀର ।

ଦୁହିଁଙ୍କର ଏହିପରି ପଦେ ପଦେ ପଡ଼ିଗଲା ପରେ ବାବାଜି ନିଜ କାମରେ ଗଲା, ବୋହୂ ମଧ୍ୟ ଗାଧୋଇ ଗଲା । ବୋହୂ ସାଙ୍ଗରେ ଯେଉଁ ଝିଅଟି ଥିଲା, ସେ ସବୁ କଥା ଯା ତା' ଆଗରେ କହିଲା । ଭୁଆସୁଣୀଟେ ଭେଣ୍ଡିଆଟା ସାଙ୍ଗେ ଏପରି ରସରସିଆ କଥାବାର୍ତ୍ତା କରିବାର ଜାଣି ଲୋକେ ବହୁତ ବାଛବିଚାର କଲେ । କଥା ମୋଟ ହବାରୁ ଶଶୁର କାନକୁ ଗଲା । ଶଶୁର ତାହା ଶୁଣି ଗୋଟାକ ସାତଟା ହେଲା । ବୋହୂକୁ ବାପଘରକୁ ପଠାଇ ଦେବାକୁ ତା' ଭାଇକି ଡକାଇ ପଠାଇଲା । ଭାଇ ଖବର ପାଇଲାକ୍ଷଣି ଭଉଣୀଘରକୁ ଆସିଲା, ଶଶୁରବୁଢ଼ାଠାରୁ ସବୁକଥା ଶୁଣିଗଲା । ସେ ମଧ୍ୟ ସେସବୁ କଥାର ମର୍ମ ବୁଝିପାରିଲା ନାହିଁ । ବୁଝି ନ ପାରିବାରୁ ଭଉଣୀକି ପଚାରିଲା । ଭଉଣୀ ଶୁଣିକରି କହିଲା – ଏଥିରେ କିଛି କଥାନାହିଁ । ଶଶୁରେ ନ ବୁଝିକରି ରାଗୁଛନ୍ତି କାହିଁକି ? କଥା କିଛି ନାହିଁ । ସେଦିନ ସକାଳଟାରୁ ଗାଧୋଇ ଯାଉଛି, ବାଟରେ ଦେଖିଲି ଗୋଟେ ବାବାଜି, ତା'ର ଗଜା ବୟସ । ଏ ବୟସରେ ବାବାଜି ହେବାର ନୁହେଁ । ସେଇଥିପାଇଁ କହିଲି – ଅକାଳେ ବାବାଜି ସକାଳେ ଦେଖା । ସେ ଏହା

ଶୁଣି କହିଲା – ପଥ ବହୁ ଦୂର । ସତ କଥା, ଈଶ୍ୱରଙ୍କୁ ପାଇବା କ'ଣ ସହଜ ? ବହୁ ଦିନ ତପସ୍ୟା ନ କଲେ ଈଶ୍ୱରଙ୍କୁ ପାଇବା ଅସମ୍ଭବ । ଲୋକେ କେତେ କେତେ ଯତ୍ନକରି ତାଙ୍କୁ ପାଇନାହାନ୍ତି । ସେଇଥିପାଇଁ ବେଳ ଥାଉଁ ଥାଉଁ ବାବାଜି ନ ହେଲେ ତାଙ୍କୁ ପାଇବା ସହଜ ନୁହେଁ । ତାପରେ ମୁଁ ପୁଣି କହିଲି – ତରଙ୍ଗ ତ ବଡ଼ ଜୋର୍ । ଏଥିରେ ବା କଅଣ କଥା ଅଛି ? ଯୁବା ବୟସ, ଏତେବେଳେ ଭୋଗ କରିବାର କଥା । ଏଥିରେ ବାବାଜିପଣିଆ କିପରି ରହିପାରେ ? ସେ କହିଲା – ନାବିକ ବଡ଼ ଧୀର । ସତ କଥା, ନାବିକ ତୁରୁତୁରିଆ ହେଲେ ସିନା ଡଙ୍ଗା ସମ୍ଭାଳି ପାରିବନାହିଁ, ସେ ଯେବେ ଧୀର ହବ, ସେ ଡଙ୍ଗାର କାହିଁକି କଅଣ ହବ ? ସେହିପରି ଲୋକ ଭେଣ୍ଡା ହେଲେ କଅଣ ହବ; ସେ ଯଦି କେଉଁଥିକି ମନ ନ ବଳାଇବ, ତେବେ ତା'ର ବାବାଜି ପଣିଆ ଭଣ୍ଡୁର ହବ କାହିଁକି । ଏଇତ କଥା; ଏଥିରେ ଖରାପ କଥା କଅଣ ଅଛି ଯେ ଲୋକେ ବାଛ ବିଚାରରେ ମତେ ପୋକ ପକେଇ ଦଉଛନ୍ତି ? ଶଶୁରେ ମଧ ସେଇଥିରେ ଭାସିଯାଇ କଅଣ ବୋଇଲେ କଣ ବୁଝୁଚନ୍ତି ? ତୁମେ ଏବେ ବୁଝିଲ ତ । ଯାଅ ଶଶୁରଙ୍କୁ ବୁଝାଇଦିଅ । ଭାଇ ଭଉଣୀଠାରୁ ତତ୍ତ୍ୱ ପାଇ ଶଶୁର ବୁଢ଼ାକୁ ଖିନ୍‌ଭିନ୍ କରି ସବୁ ବୁଝାଇଦେଲା । ଶଶୁରେ ବୋହୂର ବୁଦ୍ଧି ଶୁଣି ପ୍ରଶଂସା କଲେ । ଆଉ ଲୋକେ ମଧ ଏସବୁ ଶୁଣି ବୋହୂକୁ ପ୍ରଶଂସା କଲେ । ଶଶୁରେ ବୁଝିଗଲେ । ଭାଇ ଘରକୁ ଫେରିଗଲେ । ଏତକ ନ ହୋଇଥିଲେ ବୋହୂଟି କୁଳରୁ ଯାଇଥିଲା ।



# ଚଷାର କରଣ ମର୍ଯ୍ୟାଦା

ପଟ୍ଟନାୟକପଡ଼ା ଗୋଟେ ବଡ଼ କରଣବସ୍ତି । ସେଥିରେ ଗୋଟିଏ ଚଷାଘରକୁ ଛାଡ଼ିଦେଲେ ବାକି ସମସ୍ତେ କରଣ । ମହତ୍ତ୍ୱ କହିଲେ, ସେଇଠେଇଁ ମହତ୍ତ୍ୱ ମର୍ଯ୍ୟାଦା ସରିଛି । କରଣ ଯେତେ ଗରିବ ହେଲେ ସୁଦ୍ଧା କେବେ ମହତ୍ତ୍ୱ ଛାଡ଼େ ନାହିଁ ।

ସେ ଚଷାଟା ମଧ୍ୟ ଘରକଲା ଲୋକ । ଘରେ ପୁଅ ପୁତୁରା ହୋଇ ଗୋଠେ । ତାକୁ ଚାହିଁ ଜମିବାଡ଼ି ମଧ୍ୟ ଗୁଡ଼ିଏ ଥାଏ । ବର୍ଷକର ଆୟରେ ତିନି ବର୍ଷ ଚଳେ; ହାତରେ ମଧ୍ୟ ସବୁବେଳେ ଦି'ପଇସା ଥାଏ । ସେ କରଣଙ୍କ ସାଙ୍ଗେ ରହି ତାଙ୍କର ମହତ୍ତ୍ୱ ମର୍ଯ୍ୟାଦା ସବୁବେଳେ ଦେଖି ସେହିପରି ଚାଲିଚଳନ ନିଜ ଘରେ ଚଳାଇଥାଏ । ତାଙ୍କରି ପରି ନିଶ ହଳେ ରଖିଥାଏ । ସେ ଯେପରି ଲୁଗାଟି କୁଞ୍ଚିକାଞ୍ଚି ପିନ୍ଧି ଫେରକାନି ଲମ୍ବାନ୍ତି, ଯେ ମଧ୍ୟ ସେହିପରି ଫେର ଲମ୍ବାଇ ପିନ୍ଧେ, ତାଙ୍କରି ପରି କଥାବାର୍ତ୍ତାରେ ଆଜ୍ଞା, ଅବଧାନ କହେ । ଘରେ ପିଲାଙ୍କୁ ମଧ୍ୟ ସେହିପରି କହିବାକୁ ଶିଖାଇଥାଏ । ସେ ଘରେ କେହି କାହାକୁ ତୁ, ତା, ରେ, ରା କରନ୍ତି ନାହିଁ । ସାନ ବଡ଼ ଯେ ଯାହାକୁ ପାଇଲା, ସେ ତାକୁ ଆଜ୍ଞା ଅବଧାନ କହିଲା । ଏହିପରି କରି କରଣ ହୋଇଯିବ ବୋଲି ତାର ଭାରି ଇଚ୍ଛା ।

ଦିନେ ସେ ଚଷାର ଜଣେ ବନ୍ଧୁ ତା' ଘରେ ଆସି ପହଞ୍ଚିଲେ । ବନ୍ଧୁ ପହଞ୍ଚିବାରୁ ତା' ଘରେ ଅଧିକ ମହତ୍ତ୍ୱ ମର୍ଯ୍ୟାଦାରେ ଡକାହକା ଚାଲିଲା । ସେ ଯାହା ହେଉଥିଲା, ହେଉଥିଲା, ବନ୍ଧୁ ଖାଇଲା ବେଳକୁ ମହତ୍ତ୍ୱ ବଳକା ହୋଇଗଲା । କଅଣ ହେଲା ନା, ବନ୍ଧୁ ଖାଇବାକୁ ଭାତ

ବଢ଼ାଗଲା । ବନ୍ଧୁ ହାତ ଧୋଇ ଖାଇବାକୁ ଆସିଲେ । ପୁଅ ଦେଖିଲା ଯେ ଭାତରେ ଘିଅ ପଡ଼ିନାହିଁ, ବନ୍ଧୁ କାଳେ ଲୁଖୁରା ଭାତ ଖାଇ ପକାଇବେ, ତେବେ ତ ମହତ୍ତ୍ୱ ଗଲା । ସେଇଥିପାଇଁ ସେ ତରତରରେ ଡାକ ପକାଇଲା – ବାପା ହେ । ବାପା ହେ । ବାପ ପୁଅର ଡାକ ଶୁଣି ମହତ୍ତ୍ୱରେ ତ କଥା କହିବେ, ସେଇଥିପାଇଁ କହିଲେ – ଆଜ୍ଞା । ପୁଅ କହିଲା ଶିକାଙ୍କ ଉପରେ ଘଡ଼ିଙ୍କ ଭିତରେ ଘିଅ ବିଜେ କରିଛନ୍ତି, ତାଙ୍କୁ ଶୀଘ୍ର ବିଜେ କରାଅ ।

ଘିଅ ନ ଆସୁଣୁ ବନ୍ଧୁ ଏ ଦୈବୀଛାଡ଼ ମହତ୍ତ୍ୱ ଶୁଣି ଠୋ ଠୋ ହସିଲେ । ସେଠେଇଁ କାହାକୁ କଅଣ କହିବେ । ଗାଁ' କୁ ଆସି ଆକୁ ତାକୁ ଗୋଟି ଗୋଟି କରି ମହତ୍ତ୍ୱ କଥା କହିଲେ । ଲୋକେ ସେଇଥିରୁ ପ୍ରଧାନଙ୍କ ମହତ୍ତ୍ୱ ବୁଝି ନେଲେ ।

ମହତ୍ତ୍ୱ କ'ଣ ଏତିକି ଶସ୍ତା ?



# ସ୍ୱର୍ଗ ଏଣ୍ଟୁରି

ଜଣେ ପଣ୍ଡିତ ରାଜୋଡ଼ା ବାହାରିଲେ । ସାଙ୍ଗରେ ଗୋଟିଏ ବାରିକ ନେଲେ, ବାରିକ ନାଁ ଅବୋଲକରା । ଅବୋଲକରା ପଣ୍ଡିତଙ୍କୁ କହିଥିଲା – ମୁଁ ଯେଉଁଠାଇଁ ଯାହା ପଚାରିବି, ତାହା କହି ନ ପାରିଲେ ସେଇଠୁଁ ଫେରିବି । ପଣ୍ଡିତେ ସେଥିକି ରାଜି ହେବାରୁ ସେ ସାଙ୍ଗରେ ଗଲା, ନ ହେଲେ ଯାଇ ନ ଥା'ନ୍ତା । ବାରିକ ପେଟରା ମୁଣ୍ଡାଇ ପଣ୍ଡିତଙ୍କ ପଛେ ପଛେ ଗଲା । ଯାଉ ଯାଉ ଅବୋଲକରା ବାଟରେ ଠାଏ ଗୋଟେ ହାଡ଼କୁଢ଼ ଦେଖିଲା । ଏତେ ହାଡ଼ ଜମା ହେବାର ସେ କେବେ ଦେଖି ନ ଥିଲା । ସେ ସେହିଠାଇଁ ପେଟେରାଟା ଲଥ୍‌କିନା ଥୋଇ ଦେଇ ପଣ୍ଡିତଙ୍କୁ ପଚାରିଲା – ଏତେ ହାଡ଼ ଏଠେଇଁ କିପରି ଜମା ହେଲା ? ଏହାର କାରଣ କହିବ ତ କହ, ନ ହେଲେ ମୁଁ ଏଇଠାରୁ ଫେରିବି । ପଣ୍ଡିତେ କହିଲେ ବେଳ ବହୁତ ହେଲାଣି, ଭୋକରେ ପେଟ ଆଉଟୁପାଉଟୁ ହେଲାଣି । ଆଗ ସଉଦା ପତ୍ର ଆଣେ, ରୋଷାଇବାସ କରିବା । ଖାଇ ସାରିଲେ ମୁଁ ଏହାର କାରଣ କହିବି । ଅବୋଲକରା କି ମାନିବା ଲୋକ । ତା' ନାଁ ଅବୋଲକରା । ସେ କିଆଁ ଟିକିଏ ତା' କରିବ ? ସେ କହିଲା ନାହିଁ, ସେକଥା ହେବ ନାହିଁ, ଆଗ ଏହାର କାରଣ କହ, ତାହାପରେ ଯାହା କହିବ, ସବୁ କରିବି, ନ ହେଲେ ତୁମ ପେଟରା ରଖ, ମୁଁ ଗାଁ'କୁ ଯିବି ।

ପଣ୍ଡିତଙ୍କ ଚାରା କଅଣ ? ସେ ଜାଣନ୍ତି ଅବୋଲକରା ଅକଡ଼ବାଜି । ସେଇଠୁ ସେ କହିଲେ – ହଉ ତେବେ ଶୁଣ ।

ପଣ୍ଡିତେ କହିଲେ – ଯେ କଥା କ'ଣ କି ପୂର୍ବେ ଏଠାରେ ଗୋଟେ ବଡ଼ ବଗିଚା ଥିଲା । ବଗିଚାଟା ସବୁବେଳେ ଫୁଲ ଫଳରେ ଭରା ହୋଇଥାଏ । ସେଥିରେ ଜଣେ ମାଳୀ ଥାଏ । ମାଳୀ ଏବେଳା ସେବେଳା

ବଗିଚା କାମ କରିଦେଇ ଘରକୁ ଯାଏ । ଦିନେ କଅଣ ହେଇଚି ନା, ମାଳୀ ନ ଥିଲାବେଳେ ସ୍ୱର୍ଗରୁ ଇନ୍ଦ୍ରଙ୍କର ହାତୀ ବଗିଚାକୁ ଆସିଲା । ହାତୀ ପଶିଲେ କି ବଗିଚା ରହେ ? ସେ ଡାଳପତ୍ର ଖାଇ ବଗିଚାକୁ ଉଜାଡ଼ି ଦେଇ, ମାଳୀ ଆସିଲା ବେଳକୁ ସ୍ୱର୍ଗକୁ ଚାଲିଗଲା । ହାତୀ ମୁହଁରେ ତ ବଗିଚା ସୁଆଦ ଲାଗିଚି । ସେ ଏହିପରି ପ୍ରତିଦିନ ବଗିଚାକୁ ଆସି ବଗିଚାଟାକୁ ଛାରଖାର କରି ପକାଇଲା । ମାଳୀ ଆଉ ହାତୀକି ଦେଖିପାରେ ନାହିଁ । ଖାଲି ଖୋଜି ହେଉଥାଏ ଏପରି କିଏ କଲା ? ସେ ଦେଖିଲା ଯେ ଅନେକ ଜାଗାରେ ହାତୀ ଲେଣ୍ଡି ପଡିଚି ଆଉ ହାତୀ ପାହୁଲ ପଡ଼ିଚି । ଏହା ଜାଣିପାରି ଦିନେ ଘରକୁ ନ ଯାଇ ଲୁଚିକରି ରହିଲା । ବେଳ ହେବାରୁ ହାତୀ ଗଡ଼ିଲା । ସେମିତି ଗୁଡ଼ାଏ ଡାଳପତ୍ର ଭାଙ୍ଗି ପେଟେ ଖାଇ ସ୍ୱର୍ଗକୁ ଗଲା । ମାଳୀ ଏହା ଦିନେ ଦେଖିଲା, ଦି' ଦିନ ଦେଖିଲା । ସେ ଜାଣିଲା ଯେ ଏ ହାତୀ ଆଉ କାହାର ନୁହେଁ, ଇନ୍ଦ୍ରଙ୍କର । ନିତି ସ୍ୱର୍ଗରୁ ଆସି ସ୍ୱର୍ଗକୁ ଯାଉଚି ।

ସ୍ୱର୍ଗ ଭଲ ଯାଗା ବୋଲି ଶୁଣିଥିଲା । ସ୍ୱର୍ଗ ଦେଖିବାକୁ ତା'ର ଭାରି ମନ ହେଲା । ସେ ଦେଖିଲା ଯେ ହାତୀ ତ ନିତି ସ୍ୱର୍ଗରୁ ଆସୁଚି ପୁଣି ଯାଉଚି, ତେବେ ଏହାରି ଲାଙ୍ଗୁଳ ଧରି ପାରିଲେ ସ୍ୱର୍ଗକୁ ଯାଇ ହେବ, ପୁଣି ଆସି ହେବ । ଗଲାବେଳକୁ ତା' ଲାଙ୍ଗୁଡ଼ ଧରି ସ୍ୱର୍ଗକୁ ଗଲା । ପୁଣି ସେ ଆସିଲା – ବେଳକୁ ସେହିପରି ଲାଙ୍ଗୁଡ଼ ଧରି ଚାଲିଆସିଲା ।

ଦିନେକାଳ ମାଳୀ ଘରକୁ ନ ଯିବାରୁ ଘରଲୋକେ, ଗାଁ' ଲୋକେ ତାଙ୍କୁ ପଚାରିଲେ – କିରେ ! କାଲି ତ ଏ ଖଣ୍ଡମଣ୍ଡଳ ଖୋଜିଲୁ ପାଇଲୁ ନାହିଁ, ତେବେ ତୁ କେଉଁଆଡ଼େ ଯାଇଥିଲୁ, କହ । ମାଳୀ ଯେପରି ସ୍ୱର୍ଗକୁ ଗଲା, ପୁଣି ଯେପରି ଫେରି ଆସିଲା, ସେ ସବୁ କଥା ସମସ୍ତଙ୍କୁ ଖିନ୍‌ଭିନ୍ କରି କହିଲା । ଲୋକେ ପଚାରିବାରୁ ସ୍ୱର୍ଗର ଅନେକ କଥା କହିଲା । ସେ କହିଲା ମୁଁ ସ୍ୱର୍ଗରେ ଯେତେ ଯାହା ଦେଖିଲି, ସେଥି ଭିତରେ ସ୍ୱର୍ଗର ଏଣ୍ଡୁରି ପିଠା ସବୁଠଉ ବଳି ତାରିଫ୍ । ଏଣ୍ଡୁରିଟାମାନ ଗୋଲ ଗୋଲ ହୋଇ ଶଗଡ଼ ଚକଡ଼ା ଠାଉଁ ବଡ଼ । ତା' ସୁଆଦ କଥା କଅଣ କହିବି ? ଗୋଟେ ଏଣ୍ଡୁରିକି ଆମ ଗାଁ'ଟା ଯାକର ପେଟ ନାହିଁ । ସଂସାରରେ ପୁଣି ଇମିତି ଏଣ୍ଡୁରି ହୁଏ ।

ସେ ଏଣ୍ଡୁରି ମତେ ବାଇକରିଦେଇଚି । ମୁଁ ଆଉ ସ୍ୱର୍ଗକୁ ଯାଇଥା'ନ୍ତି, କି ନ ଯାଇଥା'ନ୍ତି କେବଳ ସେଇ ଏଣ୍ଡୁରି ଲାଗି ପୁଣି ଯିବି ।

ଏଣ୍ଡୁରି ପିଠା କଥାଶୁଣି ଗାଁ'ଟାଯାକର ତୁଣ୍ଡରୁ ଲାଳ ବୋହିଲା । ସମସ୍ତେ କହିଲେ – ଆମେ ସବୁ କିମିତି ତୋ ସାଙ୍ଗରେ ସ୍ୱର୍ଗକୁ ଯାଇ ଏଣ୍ଡୁରି ଖାଆନ୍ତୁ ।

ମାଳୀ କହିଲା – ଯେବେ ଯିବ ଆସ; ଯେ ଯେତେ ଏଣ୍ଡୁରି ଖାଇବ, ଖାଅ । କାହାରିକି ମନା ନାହିଁ ।

ଲୋକେ କହିଲେ – ଏତେ ଲୋକ କେମିତି ଯିବା ?

ମାଳୀ କହିଲା – ଯିବାର କିଛି କଷ୍ଟ ନାହିଁ । ମନେରଖ, ହାତୀ ଗଲାବେଳେ ମୁଁ ଯେମିତି ହାତୀ ଲାଙ୍ଗୁଡ଼କୁ ଧରିବି ସମସ୍ତେ ସିମିତି ମୋ ଗୋଡ଼କୁ ଜଣେ ଧରି ଓହୋଳି ପଡ଼ିବ । ସେ ପୁଣି ଟିକିଏ ଉପରକୁ ଉଠିଗଲେ, ତା' ଗୋଡ଼କୁ ଆଉ ଜଣେ ଧରିବ । ଏହିପରି ଗୋଡ଼କୁ ଗୋଡ଼ ଧରି ସହଜରେ ଚାଲିଯିବା, ଆଉ କଷ୍ଟ କଅଣ ? ଏକଥା ସମସ୍ତଙ୍କ ମନକୁ ପାଇଲା । ଗାଁ'ଟାଯାକ ଏଣ୍ଡୁରି ଲୋଭରେ ହାତୀ ଆସିଲା ବେଳକୁ ସଜବାଜ ହୋଇ ଚାହିଁ ରହିଲେ । ଦେଖୁ ଦେଖୁ ହାତୀ ଆସିଲା, ବଗିଚାଯାକ ବୁଲି ବୁଲି ତାଳପତ୍ର ପେଟେ ଖାଇଲା । ସେ ଯେତେବେଳେ ସ୍ୱର୍ଗକୁ ବାହାରିଲା; ମାଳୀ ସେତେବେଳେ ତା' ଲାଙ୍ଗୁଡ଼ ଧରିଲା, ଆଉ ଜଣେ ମାଳୀ ଗୋଡ଼ ଧରିଲା, ଆଉ ଜଣେ ସେ ଜଣକର ଗୋଡ଼ ଧରିଲା । ଏହିପରି ଯେ ତା' ଗୋଡ଼, ସେ ତା' ଗୋଡ଼ ଧରି ଗାଁ'ଟାଯାକ ସ୍ୱର୍ଗକୁ ଉଠିଲେ । ମାଳୀର ମା' ବୁଢ଼ୀ ଶେଷ ଜଣକର ଗୋଡ଼ ଧରିଥାଏ । ହାତୀ ତ ଯାଉଥାଏ, ଏ ପଂଝାଟାଯାକ ସେହିପରି ଓହଳିକରି ଯାଉଥାଆନ୍ତି । ଯାଉ ଯାଉ ଅଧବାଟଠେଇଁ ଜଣେ କହିଲା – ଆମେ ଏତେ ଲୋକ ଯାଉଥାଇ ଯେ ଏଣ୍ଡୁରି କଅଣ ଏତେ ଲୋକଙ୍କୁ ଅଣ୍ଟିବ ? ଏଣ୍ଡୁରିଟାଏ ତ । ହେଇ, ହେଇ କେତେ ବଡ଼ ହବ ?

ମାଳୀ ଏହାଶୁଣି ଏମାନଙ୍କ ମନବୋଧ କରିବାକୁ ତରତର ହୋଇ ହାତୀ ଲାଙ୍ଗୁଡ଼ ଛାଡ଼ିଦେଇ ଦୁଇ ହାତରେ ଏଡ଼ିକି ଏଣ୍ଡୁରି ବୋଲି

ଯେତେବେଳେ ଦେଖାଇଲା, ସେତେବେଳେ ସବୁଗୁଡ଼ାକ ସାଙ୍ଗେ ସାଙ୍ଗେ ଦୁଲ୍‌ଦାଲ୍ ହୋଇ, ଭୁସ୍‌ଭାସ୍ ହୋଇ ଅଜାଡ଼ି ହୋଇ ତଳେ ପଡ଼ିଲେ । ଏତେ ଉଚ୍ଚାରୁ ପଡ଼ିଲେ କି ମଣିଷ ବଞ୍ଚେ ? ସବୁଗୁଡ଼ାକ ଏକାବେଳକେ ନାରାୟଣ ପାଇଗଲେ । ଏତେ ମୁର୍ଦ୍ଦାର ଜମା ହେଲା ଯେ ସେ ଗୋଟେ ମଡ଼ାପର୍ବତ ପରି ଦିଶିଲା । ଗାଁ'ରେ ହେଲେ କିଏ ଅଛି ଯେ ଏଗୁଡ଼ାକ ଗୋଟାଗୋଟି କରି ନେଇ ଦାହ କରିବ । ଗାଁ'ରୁ ତ ଅଣ୍ଡା ବଚ୍ଚା, ପିଲା ବୁଢ଼ା ସମସ୍ତେ ଏଣ୍ଡୁରି ଖାଇବାକୁ ଯାଇଥିଲେ, ଆଉ ଦାହ କରିବ କିଏ ? ସେଗୁଡ଼ିକ ସେମିତି ଜମା ଜମି ରହିଲା । ପଛକୁ ସଢ଼ି ପଚିଗଲା । ବାକି ହାଡ଼ଗୁଡ଼ାକ ସେଇ କାଳରୁ ଏପର୍ଯ୍ୟନ୍ତ ସିମିତି ହୋଇ ରହିଚି । ଏୟା ହେଲା କଥା । ପଣ୍ଡିତେ ଅବୋଲକରାକୁ କହିଲେ – ଏବେ ତ ହାଡ଼କୁଢ଼ କଥା ବୁଝିଲୁ । ଯା, ସଉଦା ଆଣ, ରୋଷେଇ କରିବା ।

ଅବୋଲକରାର ମନ ପଣ୍ଡିତଙ୍କ କଥାରେ ମାନିଗଲା । ତା'ପରେ ସଉଦାପତ୍ର ଆଣିଲା । ପଣ୍ଡିତେ ରୋଷେଇବାସ କଲେ । ଦୁହେଁ ଖାଇସାରି ପୁଣି ଚାଲିଲେ ।



# ଠକ ପରମାର୍ଥୀ

ଗୋଟିଏ ଗ୍ରାମରେ ଜଣେ ପରମାର୍ଥୀ ଥିଲେ । ସେ ସବୁବେଳେ ଚିକ୍‌କଣ କରି ହରିମନ୍ଦିର ତିଳକଟିଏ କାଟିଥା'ନ୍ତି । ସବୁବେଳେ ଝୁଲାରେ ହାତ ପୂରାଇ ମାଳା ଟପ୍ ଟପ୍ କରନ୍ତି, ତା'ଛଡ଼ା କେହି କିଛି ମନ୍ଦ କଥା କହିଲେ ସାଙ୍ଗେ ସାଙ୍ଗେ ରାଧେ କୃଷ୍ଣ, ରାଧେ କୃଷ୍ଣ କହନ୍ତି । ସଂକୀର୍ତ୍ତନରେ ଭକ୍ତିରେ ଥରି ଯାଆନ୍ତି, ଆଖିରୁ ପ୍ରେମାଶ୍ରୁ ଗଡ଼ାଇପକାନ୍ତି । ଗାଁ' ଲୋକେ ତାଙ୍କର ଏ ରଙ୍ଗ ଢଙ୍ଗରେ ଭଳିଯାଇ ତାଙ୍କୁ ଭାରି ଭକ୍ତ ବୋଲି ବିଶ୍ୱାସ କରନ୍ତି ।

ସେହି ଗାଁ'ର ଜଣେ ଲୋକ ବିଦେଶ ବାହାରିଲା । ତା' ହାତରେ ଗୁଡ଼ିଏ ଟଙ୍କା ସୁନା ଥିଲା । ଏତେଗୁଡ଼ିଏ ନେଇ ହେବ ନାହିଁ, କି କାହାରି ଜିମା ଦେବାକୁ ଆପଣା ଲୋକ ପାଇଲାନାହିଁ । ସେହି ପରମାର୍ଥୀଙ୍କୁ ବିଶ୍ୱାସ କରି ତାଙ୍କ ପାଖକୁ ଯାଇ କହିଲା – ଆପଣ ମୋର ଗୋଟିଏ ଉପକାର କରିବେ । କଥା ଆଉ କିଛି ନୁହେଁ, ମୁଁ କିଛି ଦିନ ବିଦେଶ ଯିବି । ମୋ ପାଖେ କିଛି ଟଙ୍କା ପଇସା ଅଛି । ଆପଣ ଧର୍ମପରାୟଣ ଲୋକ । ସେଗୁଡ଼ିକ ମୁଁ ଆପଣଙ୍କ ପାଖେ ରଖିଦେଇ ଯିବି । ମୁଁ ପୁଣି ଫେରିଲେ ସେ ସବୁ ନେଇଯିବି । ଆପଣ ଅନୁଗ୍ରହ କଲେ ମୋର ଭାରି ଉପକାର ହେବ ।

ପରମାର୍ଥୀ ଏହା ଶୁଣି ମନେ ମନେ ବଡ଼ ଖୁସି ହେଲେ । ଦେଖିଲେ, ଏତେଗୁଡ଼େ ଧନ ଆପେ ଆପେ ମିଳୁଛି, ଯା କିଏ ଛାଡ଼େ ? କିନ୍ତୁ ହଠାତ୍ ରାଜି ନ ହୋଇ କହିଲେ – ରାମ ରାମ ପର ଧନ ରଖିବା କାମ ମୋ ଦ୍ୱାରା ହୋଇପାରିବ ନାହିଁ । ପର ଧନ ଛୁଇଁବା ମହାପାପ । ମୁଁ କାହିଁକି ଜାଣିଶୁଣି ଏ ପାପ କରିବି ? ଆପଣ ଆଉ କାହାକୁ ଦେଇ ଯାଆନ୍ତୁ ।

ସେ ଲୋକ ପରମାର୍ଥୀର ଏ ନିର୍ଲୋଭପଣିଆ ଦେଖି ଖୋସାମତ୍ କରି କହିଲା – ମୁଁ ଆଉ ବିଶ୍ୱାସୀ ଲୋକ ପାଉନାହିଁ । ମୋ ଟଙ୍କା ତ ମୁଁ ନେଇଯିବି, ଆପଣଙ୍କର କାହିଁକି ପାପ ହେବ ? ଆପଣ ଏଇତକ ଅନୁଗ୍ରହ କରନ୍ତୁ ।

ପରମାର୍ଥୀ ସତେ ଇଚ୍ଛା ନ ଥିଲାଭଳିଆ ହୋଇ କହିଲା ଯେବେ ଆଉ ଲୋକ ପାଉନାହଁ, ତେବେ ଦିଅ, ରଖିବି । ଆଉ କଅଣ କରାଯିବ ? କିନ୍ତୁ ଆସିଲା ମାତ୍ରକେ ତୁମ ଟଙ୍କାତକ ନେଇଯିବ, ନ ହେଲେ ମୁଁ ରଖିବି ନାହିଁ ।

ସେ ଲୋକ କହିଲା – ୟାନା ଗୋଟେ କଥା ? ମୁଁ କାହିଁକି ଆପଣଙ୍କୁ ହଇରାଣ କରିବି ? ଦେଖିବେ ନାହିଁ ମୁଁ ଆସିଲା ମାତ୍ରକେ ମୋ ଟଙ୍କା ନେଇଯିବି ।

ପରମାର୍ଥୀ – ହଉ ତେବେ ଆଣ ।

ସେ ଲୋକ ତା'ର ସବୁ ଧନ ରୁଣ୍ଡେଇ ପୁଣ୍ଡେଇ ଆଣି ପରମାର୍ଥୀଙ୍କୁ ଦେଇ ବିଦେଶ ଗଲା । ସେ ପୁଣି କେତେକାଳ ପରେ ବିଦେଶରୁ ଫେରି ପରମାର୍ଥୀଙ୍କୁ ତା' ଟଙ୍କା ମାଗିଲା । ପରମାର୍ଥୀ ଏହା ଶୁଣିଲା ମାତ୍ରକେ କାନରେ ହାତଦେଇ କହିଲା କିଓ, କି ଟଙ୍କା ? ତୁମେ ପାଗଳ ନା କ'ଣ ? କିଓ ମୁଁ କି ଟଙ୍କା ଦେବି ?

ଏହାଶୁଣି ସେ ଲୋକର ହାକାସି ଉଡ଼ିଲା । ସେ କହିଲା – କିଓ, ଆପଣ ଏପରି କ'ଣ କହୁଛନ୍ତି ? ମୁଁ ପରା ଆପଣଙ୍କୁ ମୋର ସର୍ବସ୍ୱ ଦେଇଯାଇଥିଲି ? ଆପଣ ଏପରି କଅଣ କହୁଛନ୍ତି ।

ପରମାର୍ଥୀ କହିଲା – ରାଧେ କୃଷ୍ଣ, ରାଧେକୃଷ୍ଣ, ଏ କି କାଳ ହେଲା । ଏ କି କଥା କହୁଛ ଆଉ ହବ ନାହିଁ, ହବ ନାହିଁ । ନ ହେଲେ କି କଳିକାଳ ।

ସେ ଲୋକ ପରମାର୍ଥୀର ଏ ରୁବାବ ଦେଖି କାଠପରି ହୋଇଗଲା । ତା' ମୁଣ୍ଡ ଚକ୍ର ପରି ଘୂରିଗଲା । ହବାର କଥା । ବିଚରା ସର୍ବସ୍ୱ ଦେଇଯାଇଥିଲା । ହାତରେ ଫଟା ପାହୁଲାଟିଏ ନାହିଁ, ଏଥିରେ କିପରି ଥୟ ହୋଇପାରେ ? ସେ କହିଲା – କିଓ, ଆପଣ କ'ଣ ଏପରି କହୁଛନ୍ତି ?

ମୁଁ ପରା ଆପଣଙ୍କୁ ସର୍ବସ୍ୱ ଦେଇଯାଇଥିଲି । ମୁଁ ଫେରିଲେ ମୋ ଧନ ମୋତେ ଫେରାଇ ଦେବାକୁ ପରା କଥା ହୋଇଥିଲା ।

ପରମାର୍ଥୀ କହିଲା – ରାଧେ କୃଷ୍ଣ, ରାଧେ କୃଷ୍ଣ । ହାୟେ, ତୁମ ସାଙ୍ଗରେ ମୋର କେବେ ଦେଖାସାକ୍ଷାତ ନାହିଁ । ତୁମେ ଏଠାରେ ଥିଲ, କି ବିଦେଶରେ ଥିଲ ମୁଁ ବା କିମିତି ଜାଣିବି । ଜଣାନାହିଁ, ଶୁଣାନାହିଁ, ସତିକା ଥାତି ରଖିଲା ଭଳି କୁଆଡୁ ଦୌଡ଼ି ଆସି ଗୋଟେ ଲଟ ଲଗାଇଚ, କଅଣ ନା – ମୁଁ ଯେଉଁ ଟଙ୍କା ଦେଇଥିଲି, ସେ ଟଙ୍କା ଦିଅ । ଆଉ ହବନାହିଁ, ହବ ନାହିଁ । ତୁମେ ଆଉ କାହାକୁ ଦେଇଥିବ, ମନେକର । ତୁମେ କାହାକୁ ଦିଅ, ନ ଦିଅ, ସେଥିରେ ଆମର ଯାଏ କେତେ, ଆସେ କେତେ ? ଆଉ ଏଠାରେ ପାଟିତୁଣ୍ଡ ନ କରି ତୁନି ହୋଇ ଚାଲିଯାଅ ।

ବିଚରା ଏଥିରେ ନିରାଶ ହୋଇ ବୋବାଳି ପକାଇଲା । ବୋବାଳି ପକାଇବାର କଥା । ତା'ର ଯାହା ସମ୍ପତ୍ତି ଥିଲା, ସବୁତକ ତ ତାକୁ ଦେଇସାରିଛି । ବାସି ଓଳିକି ଦାନାନାହିଁ । ଏଥିରେ ଥୟ ହେବ କେତେକେ । କଅଣ କରିବ ଉପାୟ ତ ନାହିଁ, କାନମୁଣ୍ଡା ଆଉଁସି ଆଉଁସି ଘରକୁ ଆସିଲା । ନ ଖାଇ ନ ଶୋଇ ବଡ଼ ବ୍ୟସ୍ତ ହେଲା । ଲୋକେ ଏସବୁ ଘଟଣା ଶୁଣି ହା ରାମ ହେଲେ । ହା ରାମ ହେଲେ ସିନା; ପରମାର୍ଥୀ କି କହିବାକୁ କାହାରି ହୁବ ପାଇଲା ନାହିଁ । ସମସ୍ତେ ତୁନି ତାନି ହୋଇ ରହିଲେ । ଇମିତି କେତେଦିନ ଗଲା ।

ସେ ଗାଁ'ରେ ଗୋଟେ ବେଶ୍ୟା ଥିଲା । ତା'ର ଅଚଳାଚଳ ସମ୍ପତ୍ତି । ଏ କଥା ତା' କାନକୁ ଗଲା । ସେ ଶୁଣି ବଡ଼ ବ୍ୟସ୍ତ ହେଲା । ସେ ବୁଝିଲା – ପରମାର୍ଥୀଟା ମହାଠକ, ୟାକୁ ପାନେ ଦବା ଦରକାର । ଏଇ ବିଚାର କରି ଦିନେ ହୀରା ନୀଳାର ଗୁଡ଼ିଏ ଅଳଙ୍କାର ପିନ୍ଧି ପରମାର୍ଥୀ ପାଖକୁ ଗଲା । ପରମାର୍ଥୀ ତାକୁ ଦେଖି ଭାବିଲା ଗୁଡ଼େ ସମ୍ପତ୍ତି ଏହାର ଅଛି, ଏଥିରୁ କିଛି ମାରନ୍ତି କି ? ପର ଧନକୁ ଲୋଭ କରିବା ତ ତା'ର ସ୍ୱଭାବ । ତେଣୁ ମନରେ ତା'ର ଏଇ ଚିନ୍ତା ପଶିଲା । ତା'ପରେ ତୁମେ କୁଆଡ଼େ ଆସିଲ ବୋଲି ପଚାରିବାରୁ ବେଶ୍ୟା କହିଲା, ମୁଁ ଆସିଲି କାହିଁକି କି – ମୁଁ ଦିନା କେତେ କାଶୀ ଯିବି, ଦି'ମାସ ଖଣ୍ଡେ ସେଠାରେ ରହିବି ।

ଧନତକ କାହାକୁ ଦେଇଯିବି ? ପାଖରେ ସେମିତି ବିଶ୍ୱାସୀ ଲୋକ କେହିନାହାନ୍ତି । ଭାବି ଭାବି କେହି ତ ଦିଶିଲେ ନାହିଁ, ଆପଣଙ୍କ ଜିମା କରି ଦେଇଯିବାକୁ ଠିକ୍ କଲି । ମୁଁ ଫେରିବା ପର୍ଯ୍ୟନ୍ତ ଆପଣ ସେତକ ପାଖରେ ରଖିଲେ, ମୁଁ ଚିନ୍ତାରୁ ଖଲାସ ପାଇବି ।

ପରମାର୍ଥୀ ସତେ ଯେପରି ପରଧନକୁ ଚାହେଁନାହିଁ, ସେହିପରି ହୋଇ କହିଲା – ରାଧେକୃଷ୍ଣ, ରାଧେକୃଷ୍ଣ, ମୁଁ ପରାମାର୍ଥୀ ଲୋକ ଏ ଅଡୁଆରେ ପୂରାଅ ନାହିଁ । ତୁମର ପୁଣି ହୀରା, ନୀଳା, ଜିନିଷ, ତା' ମୁଁ ସମ୍ଭାଳି ପାରିବି ନାହିଁ । ପଛକୁ ଏୟା ହେବ, ସବୁବେଳେ ତା'ରି ଉପରେ ଦୃଷ୍ଟି ରହିବ, ମୁଁ ଆଉ ହରିନାମ ଟିକିଏ କରିପାରିବି ନାହିଁ । ତୁମେ ଯାହା ପାଖରେ ହେଲେ ରଖ, ମତେ ଏଥିରେ ପକାଅ ନାହିଁ ।

ବେଶ୍ୟା ତାକୁ କହିଲା – ୟା କହିଲେ ଚଳିବ ? ଆପଣ କୁହନ୍ତୁ – ଆପଣଙ୍କଠୁ ବଳି ଆଉ କିଏ ବିଶ୍ୱାସୀ ଲୋକ ଅଛି ? ଆଉ ସେପରି କେହି ନାହାନ୍ତି ବୋଲି ତ ମୁଁ ଆପଣଙ୍କ ପାଖକୁ ଆସିଲି । ଆପଣ ନିରାଶ କଲେ ଚଳିବ ?

ପରମାର୍ଥୀ ମନେ ମନେ ଖୁସି ହୋଇ ନ ଯୋଗାଇଲା ଭଳି କହିଲା – ହଉ ଯେବେ ଇମିତି କଥା, ତେବେ ତୁମ ଧନ ଗଣାପୋଛା କରି ଜଉମୁଦ ଦେଇ ରଖିଦିଅ । ଆଉ କଅଣ କରାଯାଏ ? ଏଥିରେ ଯେତେ ତୁମର ଉପକାର ହେବ, ତେବେ ସେ କଣ ଧର୍ମ ନୁହେଁ ?

ବେଶ୍ୟା କହିଲା – ଆପଣ ଯେମିତି କହିବେ, ମୁଁ ସେମିତି କରିବି । ଆସିଲା ମାତ୍ରକେ ମୋ ଧନ ମୁଁ ନେଇଯିବି । ମୋ ପାଇଁ ଏଇ କେତେଟା ଦିନ ଦୁଃଖ ସହିବେ । ତେବେ କାଲି ଶଗଡ଼ ଲଗାଇ ଏକା ଥରକେ ସବୁ ଆପଣଙ୍କ ପାଖକୁ ଘେନି ଆସିବି । ବେଶ୍ୟା ଏହା କହି କହି ନିଜ ଘରକୁ ଗଲା ।

ପରମାର୍ଥୀ ଗୁଡ଼େ ଧନ ହାତକୁ ଆସିବା ଆଶାରେ ମନେ ମନେ ଭାରି ଖୁସି ହେଲା । ରାତି କେମିତି ପାହିବ, କେତେବେଳେ ଗାଡ଼ି ଶଗଡ଼ ଆସିବ, ତାକୁ ସବୁ କେଉଁଠି ରଖିବି, ଖାଲି ଏଇ ଚିନ୍ତାରେ ରାତି ପାହିଲା ।

ତେଣେ ବେଶ୍ୟା ଘରକୁ ଫେରିଯାଇ, ଯାହାକୁ ପରମାର୍ଥୀ ଠକିଥିଲା ତାକୁ ଡକାଇ କହିଲା କାଲି ସକାଳୁ ଯାଇ ପରମାର୍ଥୀ ଦୁଆରେ ଧାରଣା ଦେଇ ବସିରହିବ । କେହି ଲୋକ ଗଲେ ତାରି ଆଗରେ କହିବ – ମୋ ଟଙ୍କାତକ ଦିଅ । ନ ହେଲେ ମୁଁ ଏଠାରୁ ଉଠିବି ନାହିଁ ।

ସେ ଲୋକ ବେଶ୍ୟା କଥାନୁସାରେ ସକାଳୁ ଯାଇ ପରମାର୍ଥୀ ଦୁଆରେ ହାଜର ହେଲା । ପରମାର୍ଥୀ ତାକୁ ଦେଖି ଦୂର ଦୂର ମାର ମାର କଲା; ମାତ୍ର ସେ ଜମା ଚଳିଲା ନାହିଁ । କେହି ଭଦ୍ରଲୋକ ଆସିଲେ, ତାରି ଆଗରେ କହେ – କ'ଣ, ମୋ ଟଙ୍କା ଦବ, କି ନାହିଁ ? ସେ ସବୁ ଶୁଣୁଥା'ନ୍ତି, ସେ ଏକଥା ପଚାରି ସବୁ ବୁଝୁଥା'ନ୍ତି । ସେ ଲୋକ ସେହିପରି ବସିଥାଏ, ଯେତେ କହିଲେ ସୁଦ୍ଧା ଉଠେନାହିଁ ।

ପରମାର୍ଥୀ ଦେଖିଲା ଯେ ବେଶ୍ୟା ଧନ ସମ୍ପତ୍ତି ଘେନି ଆସିଲାବେଳକୁ ଯେବେ ଏ ଲୋକ ବସିଥିବ, ତେବେ ବଡ଼ ଅଡୁଆ ହେବ । ବେଶ୍ୟା ଯେବେ ଜାଣିବ – ମୁଁ ଯାକୁ ଠକିଚି, ତେବେ ସେ ତା' ଧନ ମୋତେ ଆଉ ଦବ ନାହିଁ । ଶେଷକୁ ଅଳ୍ପ ଧନ ଲାଗି ବହୁତ ଧନ ହରାଇବାକୁ ପଡ଼ିବ । ଏଣୁ ଯାକୁ ଶୀଘ୍ର ବିଦା କରିଦେବା ଦରକାର । ଏହା ସ୍ଥିର କରି ତା'ର ସବୁ ଧନ ତାକୁ ଦେଇ ବିଦା କରିଦେଲା । ସେ ବିଚରା ଧନତକ ପାଇ ଘରେ ରଖିଦେଇ ବେଶ୍ୟା ଘରକୁ ଯାଇ କହିଲା – ଆଜି ତମ ଯୋଗୁଁ ଧନତକ ପାଇଲି, ତୁମରି ଯୋଗୁଁ ମଧ୍ୟ ବଞ୍ଚିଗଲି ।

ବେଶ୍ୟା ନିଜର କୌଶଳରେ କାର୍ଯ୍ୟସିଦ୍ଧ ହେଇଥିବାର ଜାଣି ଅତ୍ୟନ୍ତ ଖୁସି ହେଲା । ତେଣେ ବେଶ୍ୟାର ଧନ ଶଗଡ଼କୁ ଚାହିଁଚାହିଁ ପରମାର୍ଥୀର ଆଖିରୁ ପାଣି ମଲା । ବେଶ୍ୟା କିଆଁ ତା' ଦୁଆର ମାଡ଼ନ୍ତା ?

ଯେସାକୁ ତେସା ଠିକ୍ ।



# ପାନ ଆଣ, ପାନ ଦେ

ଜଣେ ଭଦ୍ରଲୋକ ଚାକରକୁ ଦୁଇ ପ୍ରକାର ପାନ ଭାଙ୍ଗିବାକୁ ଶିଖାଇଥା'ନ୍ତି । ଗୋଟିଏ ପ୍ରକାର ପାନ ଆଣ, ଅନ୍ୟପ୍ରକାର ପାନ ଦେ । ଆଣ ପାନ ନିଜ ପାଇଁ, ଦେ ପାନ ଭଦ୍ରଲୋକଙ୍କ ପାଇଁ । ଆଣ ପାନରେ ଭଲ ଗୁଆଗୁଣ୍ଡି, ମସଲାମସଲି ଥାଏ । ଦେ ପାନରେ ରଦି ଗୁଆଗୁଣ୍ଡି ଥାଏ, ମସଲାର ଗନ୍ଧ ନ ଥାଏ । କେହି ଭଦ୍ରଲୋକ ଆସିଲେ, ବାବୁ ଚାକରକୁ ଡାକ ପକାନ୍ତି – ପାନ ଦେ, ନିଜ ବେଳକୁ ଆରେ ପାନ ଆଣେ କହନ୍ତି । ଚାକର ଡାକ ଅନୁସାରେ ପାନ ସଜାଡ଼ି ଆଣେ । ଏହା କାହିଁକି କିଏ ଜାଣିବ ? କେହି ଭଦ୍ରଲୋକ ଆଣ ପାନ ଖାଇସାରି ଦେ ପାନ ଖାନ୍ତେ, ତେବେ କିଏ କାହିଁ ବାବୁଙ୍କ ପିଣ୍ଡା ମାଡ଼ନ୍ତେ । ଏହିପରି ଚଳଣି ଚାଲିଥାଏ ।

ଦିନେ ବାବୁଙ୍କ ପଡ଼ୋଶୀ କାହିଁକି ବାବୁଙ୍କ ପିଣ୍ଡାକୁ ଆସିଲେ । ତାଙ୍କୁ ତ ପୁଣି ମହତ୍ତ୍ୱ କରିବାକୁ ହେବ । ତେଣୁ ଚାକରକୁ ଦେ ପାନର ବରାଦ ଦେଲା; କିନ୍ତୁ ପଡୋଶୀ ଭଦ୍ରଲୋକ ଆଣ ପାନ ଦେ ପାନର ରହସ୍ୟ ଆଗରୁ ଜାଣିଛନ୍ତି । ସୁତରାଂ ଦେ ପାନର ବରାଦ ଶୁଣି କହିଲେ – ଆରେ ଦେ ପାନ ନ ଆଣି, ଆଣ ପାନ ଆଣିବୁ । ବାବୁ ଏ କଥା ଶୁଣି ମୁଣ୍ଡ ତଳକୁ କଲେ । ଭାବିଲେ – ଏ ଭେଦ ଭଦ୍ରଲୋକ ଜାଣିଲେ କିପରି । ଏ ଭେଦ ଯେବେ ଦାଣ୍ଡରେ ଆଉ ପାଞ୍ଚଜଣ ଜାଣନ୍ତି, ତେବେ ସବୁ ମହତ୍ତ୍ୱ ପାଣିକି ଯିବ । ସୟତାନ ଚାକର ଏ ଗୁମରତକ ନିଶ୍ଚେ ଭଦ୍ରଲୋକଙ୍କୁ କହିଛି । ନ ହେଲେ ଯେ ଜାଣନ୍ତେ କିପରି । ବଦ୍‌ମାସ ଚାକର ତ କମ୍ କଥା କରିନାହିଁ । ତା'ରି ଯୋଗୁଁ ସିନା ମୁଣ୍ଡ ଆଜି ତଳକୁ ହେଲା । ଯାକୁ ରଖି ଆଉ ମଙ୍ଗଳ ନାହିଁ । ଏହା ସ୍ଥିର କରି ଚାକରକୁ ଘରୁ ବାହାର କରି ଦେଲେ; କିନ୍ତୁ ମହତ୍ତ୍ୱ ଚାରିଆଡ଼େ ଫୁଟି ବାହାରିଲା ।

ଲୋକେ କ'ଣ ଏହିପରି ମହତ୍ତ୍ୱ ରଖନ୍ତି ?





# କାହିଁ, ଭାର୍ଯ୍ୟା ହେବାକୁ ତ କେହି କହିଲେ ନାହିଁ

ଲୋକର ଆପଦ ବିପଦ ପଡ଼ିଲେ ଗାଁ'ର ମୁଖିଆ ଲୋକେ ବହୁତ ବୋଧ ଶୋଧ ଦିଅନ୍ତି । ଥରେ କ'ଣ ହେଲା ନା – ଜଣେ ଲୋକର ବାପା ମରିଗଲେ । ତାକୁ ବୋଧ ଶୋଧ ଦେବାକୁ ଗାଁ'ର ବୁଢ଼ା ବୁଢ଼ା ଲୋକେ ଆସିଲେ । କିଏ କେତେ ପ୍ରକାର ବୁଝାଇଲେ । ତେବେ ସୁଦ୍ଧା ସେ ଲୋକ ଥୟ ହେଲାନାହିଁ । ସେ କହିଲା – ହଁ ମୁଁ ସବୁ ଜାଣୁଛି; କିନ୍ତୁ ବାପା ତ ଆଉ ପାଇବି ନାହିଁ । ଆଉ ମୋ ପାଇଁ କିଏ ଆହା କରିବ । ସମସ୍ତେ କହିଲେ – କିଛି ପରବାୟ ନାହିଁ । ସେସବୁ କଥା କାହିଁକି ଭାବୁଛୁ ? ଧୈର୍ଯ୍ୟ ଧର ଆମକୁ ସବୁ ଚାହଁ । ଆମେ କ'ଣ ସବୁ ତୁମର ବାପା ନୋହୁଁ ? ଏହିପରି ବୁଝାସୁଝା କରି ଯେଝା ଘରକୁ ଗଲେ । ସେ ସମୟ ଚାଲିଗଲା । ବାପା ମରିବାର ବର୍ଷ ପୂରି ନାହିଁ, ତା'ର ମାଆଟି ମଧ୍ୟ ମରିଗଲା । ବାପା ମରିବା ଦରଜ ଯାଇନାହିଁ, ସେଥିରେ ପୁଣି ମାଆ ମଲା । ଦୁଃଖ କଥା ଆଉ କାହିଁକି ପଚାରୁଛ ? ବିଚରା କାନ୍ଦ ବୋବାଳିରେ ଅଥୟ ହେଲା, ସାଇ ମାଇପେ ଜଣ ଜଣ ହୋଇ ଆସି ବହୁତ ବୁଝାଇଲେ । ସମସ୍ତେ କହିଲେ – ବିକଳ ହୁଅନାହିଁ, ଆମକୁ ସବୁ ଚାହଁ । ଆମେ କ'ଣ ସବୁ ତୁମର ମାଆ ନୋହୁଁ ? ଯେତେବେଳେ ଯାହା ପଡ଼ିବ, ଆମେ ସବୁ କରିଦେବୁ । ଏହିପରି ବୋଧବାଧ କରି ଯେ ଯୁଆଡ଼େ ଗଲେ । ଏହିପରି ଦିନାକେତେ ଗଲା । ତା' ଦଶା ତ ଖରାପ । ପୁଣି କେତେ ଦିନ ଯିବା ପରେ ଭାର୍ଯ୍ୟାଟି ମରିଗଲା । ତା' ଘରେ ତା' ଛଡ଼ା ଆଉ କେହି ରହିଲେ

ନାହିଁ । ମଣିଷ ତ ? କେତେ ସହିବ ? ବଡ଼ ଅଥୟ ହେଲା । କାନ୍ଦିଲା, ମୁଣ୍ଡ ବାଡ଼େଇଲା । ଏହିପରି ହବାରୁ ସାଇ ମାଇପେ ଆସି କିଏ କେତେ ବୁଝାଇଲେ, ଶେଷରେ ସେ ବୁଝିଲା । ଥୟ ହେଲା । ୟା କ'ଣ ହୁଅନ୍ତା ନାହିଁ କି । ସେ ଥୟ ହେଲା ଉତ୍ତାରୁ ସାଇ ମାଇପଙ୍କୁ କହିଲା – ହୟେ, ତୁମେ ସବୁତ ମାଆ ମଲାବେଳେ ଆବୁଡ଼ାପଡ଼ି କହିଲ – ଆଉ କାନ୍ଦନା, ମା' ସିନା ଚାଲିଗଲା, ଆମେ କ'ଣ ସବୁ ମା' ନୋହୁଁକି । ସେଇ ତ ତୁମେ ସବୁ । କାହିଁ ଭାର୍ଯ୍ୟା ମଲାବେଳେ କେତେ କଥା ନ କହିଲ, ଜଣେ ହେଲେ ତ କେହି କହିଲ ନାହିଁ – ଭାର୍ଯ୍ୟା ସିନା ମରିଗଲା, ଆମେ କ'ଣ ସବୁ ଭାର୍ଯ୍ୟା ନୋହୁଁ କି ? ଏ କଥା ଜଣେ ହେଲେ କିଏ କହିଲ କି ? ଲୋକେ ଏହା ଶୁଣି ଲାଜରେ ଯିଏ ଯାହା ଘରକୁ ଗଲେ । ଏଥିକି ଉତ୍ତର କଅଣ ?



# ଖୋଦା ବଡ଼ା ସିଆନା

ଜଣେ ପଠାଣୁଣୀର ଚାରିଟା ସୁଉକି ହଜିଗଲା । ସେ ବହୁତ ଖୋଜିଲା । ଗୋଟେ ହେଲେ ପାଇଲା ନାହିଁ । ଗରିବ ଲୋକ । ବୋଧ ହଉଚି କେତେକେ । ପଛକୁ ଖୋଦାଙ୍କୁ ଜଣାଇଲା-ଖୋଦା । ଧନତକ ମିଳିଗଲେ ଗୋଟିଏ ସୁଉକିର ସିରିଣୀ ଦେବି । ତାପରେ ତାର ବିଶ୍ୱାସ ହେଲା । ସେ ପୁଣି ଖୋଜିଲା, ଖୋଜି ଖୋଜି ତିନିଟା ସୁଉକି ପାଇଲା । ଆଉ ଗୋଟେ ପାଇଲା ନାହିଁ । ଯେତେବେଳେ ଦେଖିଲା – ଆଉ ମିଳିବ ନାହିଁ, ସେତେବେଳେ ମନକୁ ବୁଝାଇବାକୁ କହିଲା – ହଁ, ଆଉ ଖୋଜି କ'ଣ ହେବ । ପାଇଲେ ତ ସେ ମୋତେ ଭୋଗ ହେବ ନାହିଁ । ମୁଁ ତ ଖୋଦାଙ୍କୁ ପୁଣି ସୁଉକାକର ସିରିଣୀ ଦେଇଥାଆନ୍ତି । ସେ ସୁଉକିଟା ଏବେ ସିରିଣୀ ବାବଦରେ ଯାଉ; ମନକୁ ଏହିପରି ବୁଝାଇ ଆଉ ଖୋଜିଲା ନାହିଁ । ସିରିଣୀ ଦେବା କଥା ଯେ ସବୁ ଶୁଣିଥିଲେ, ସେ ସବୁ ବୁଢ଼ୀକି ସିରିଣୀ ଦେବାକଥା ପଚାରିଲେ । ବୁଢ଼ୀ କହିଲା ସିରିଣୀ ଭୋଗ ଆଉ ମୋ ହାତରେ ଅଛି କି । ଖୋଦା ବଡ଼ ସିଆନା, ଆଗ ସେ କାଟ୍‌ଲିଆ ଚାରାନା ।



# ଦେଖ ହରି କରେ କି ?

ଋଷିମାନେ ବଣରେ ଥା'ନ୍ତି । ରାକ୍ଷସଗୁଡ଼ାକ ମଧ୍ୟ ସେଇ ବଣରେ ରହନ୍ତି । ସବୁକାଳେ ରାକ୍ଷସଗୁଡ଼ିକ ଋଷିମାନଙ୍କର ଯାଗଯଜ୍ଞ ନଷ୍ଟ କରନ୍ତି; ଆଶ୍ରମରେ ନିଆଁ ଲଗାଇ ଦିଅନ୍ତି । ଋଷିମାନଙ୍କର ଆଉ କାହାକୁ ଭୟ ନୁହେଁ, ଖାଲି ସେ ଅସୁରଙ୍କୁ ।

ଅସୁରଙ୍କ ଅଖାଦ୍ୟ କିଛି ନାହିଁ । ସେ ମଦ ଖାଇ ମାତାଲ ହୁଅନ୍ତି । ଘୁଷୁରି କ'ଣ, ଗାଈ କ'ଣ, ଘୋଡ଼ା କ'ଣ, ମଣିଷ କ'ଣ, ଯାହାକୁ ପାଆନ୍ତି, ତା' ମାଉଁସ କଞ୍ଚାରେ ଖାଆନ୍ତି, ହାଡ଼ଗୁଡ଼ାକ ସୁଦ୍ଧା ଚୋବାଇ ଦିଅନ୍ତି । ଅସୁରଙ୍କୁ ଦେଖିଲେ ଲୋକର ଜୀବ ଛାଡ଼ିଯିବ ।

ଥରେ ଅସୁରଯାକ ଋଷିମାନଙ୍କ ତପସ୍ୟା ନଷ୍ଟ କରିବାକୁ ବିଚାର କଲେ । ସେ ଦେଖିଲେ ଯେ ଯଜ୍ଞକୁଣ୍ଡ ଭାଙ୍ଗିଦେଲେ ପୁଣି କୁଣ୍ଡ କରି ଯଜ୍ଞ କରୁଛନ୍ତି । ଆଶ୍ରମ ପୋଡ଼ି ଦେଲେ ପୁଣି ନୂଆ ଆଶ୍ରମ କରିଦେଉଛନ୍ତି । କଅଣ କଲେ ତାଙ୍କ ଋଷି ପଣିଆ ମୂଳରୁ ଯିବ, ଏ ବିଚାର ପଡ଼ିଲା । ବିଚାରରେ ଠିକ୍ ହେଲା, ସମସ୍ତଙ୍କୁ ଯେବେ ଘୁଷୁରି ମାଉଁସ, ଗାଈ ମାଉଁସ, କୁକୁର ମାଉଁସ ଖୁଆଇ ଦେବା, ସେ ଆଗ ଜପତପ, ଯାଗଯଜ୍ଞ କରିପାରିବେ ନାହିଁ । ଋଷି ପଣିଆ ଏକାବେଳକେ ଅନ୍ତରୁ ମରିଯିବ । ଏକଥା ସମସ୍ତଙ୍କ ମନକୁ ପାଇଲା । ସେଇଥିପାଇଁ ଗୋଟେ ଭୋଜିଦିନ ସ୍ଥିର ହେଲା । ଭୋଜିକି ପିଲା, ବୁଢ଼ା, ଭେଣ୍ଡା ସବୁ ଋଷିଙ୍କୁ ନିମନ୍ତ୍ରଣ କରିବାର କଥା ହେଲା । ଗୋଟେ ବୁଢ଼ା ଅସୁର ଯାଇ ଭୋଜି ଦିନକୁ ସବୁ ଋଷିଙ୍କୁ ନିମନ୍ତ୍ରଣ କରିଦେଇ ଆସିଲା ।

ଏ ନିମନ୍ତ୍ରଣ ପାଇ ସବୁ ଋଷିଙ୍କର ନାଡ଼ି ଛାଡ଼ିଗଲା । ଡକାଡକି ହୋଇ ସମସ୍ତେ ବସିଲେ । ଏ ବିପଦରୁ କେମିତି ରକ୍ଷା ପାଇବା, ଏ ଭାଳେଣି ସମସ୍ତଙ୍କର ହେଲା; କିନ୍ତୁ ଉପାୟ ଦିଶିଲା ନାହିଁ । କମ୍ କଥା ! କାହାର ଶହେ ବର୍ଷର ତପସ୍ୟା, କାହାର ଦୁଇଶହ ବର୍ଷର ତପସ୍ୟା । କିଏ ଫଳମୂଳ ଖାଇ ବଞ୍ଚେ, କିଏ ଜଳପାନ କରି ବଞ୍ଚେ, କିଏ ପବନ ଆହାର କରି ବଞ୍ଚେ । ଦେଖିଲେ ଯେ ଏଡ଼ିକି ଏଡ଼ିକି ତପସ୍ୟାଗୁଡ଼ାକ ସବୁଗଲା । ଆଉ ରକ୍ଷାନାହିଁ । ନ ଗଲେ କଅଣ ସେ ଅସୁରଗୁଡ଼ାକ ଆଉ ଜୀବନରେ ରଖିବେ ? ଏହିପରି



ମହାଚିନ୍ତାରେ ପଡ଼ିଲେ । ରାତିଦିନ ଖାଲି ହା ରାମ, ହା ରାମ ହେଲେ । ଆଉ ଯୋଗ, ଧ୍ୟାନ କାହିଁରେ ମନ ଲାଗିଲା ନାହିଁ । ସମସ୍ତେ ତ ଏହିପରି ହେଉଥା'ନ୍ତି । ସେମାନଙ୍କ ମଧ୍ୟରୁ କେବଳ ଜଣେ ବୁଢ଼ାଋଷି ଦମ୍ଭରେ ଥା'ନ୍ତି । ତାଙ୍କର ଭୟଭ୍ରାନ୍ତି କିଛି ନ ଥାଏ । ସମସ୍ତଙ୍କୁ ଏପରି ହା ହା ହେବାର କେହି କହୁଥା'ନ୍ତି – କାହିଁକି ବ୍ୟସ୍ତ ହଉଚ, ଦେଖ, ହରି କରେ କି ?

ଏଥିରେ କାହାର ମନ ମାନୁ ନଥାଏ । ସମସ୍ତେ ଏ କଥାକୁ ଉଡାଇ ଦେଉଥା'ନ୍ତି । ତଥାପି ସେ ବୁଢ଼ା ସବୁ କଥାରେ ସମସ୍ତଙ୍କୁ କହୁଥାନ୍ତି ସେଇକଥା, ଦେଖ ହରି କରେ କି ?

ଏହା ଶୁଣି କିଏ କହିଲା – ଦିନ ତ ପାଖେଇ ଗଲା । ନିଶ୍ଚିତ ତ ଯିବାକୁ ହେବ, ଯେତେକ ସୁକୃତ କରିଥିଲେଇଁ ସବୁ ତ ଯିବ । ଆଉ ହରି କରେ କି କହି କ'ଣ ହେବ ? ତଥାପି ସେ ବୁଢ଼ା କହୁଥାନ୍ତି, ଦେଖ ହରି, କରେ କି ?

ଏହିପରି କିଏ କେତେ ବିଥେଇ ହୋଇ କହୁଥାନ୍ତି । କିନ୍ତୁ, ବୁଢ଼ା ଋଷିଙ୍କର ସେଇ ଏକଇ କଥା – ଦେଖ ହରି କରେ କି ?

ଏହିପରି ହେଉ ହେଉ, ଭୋଜିଦିନ ଆସିଲା । ବୁଢ଼ା ହଡ଼ା, ପିଲା ବିଚରା ସବୁ ଋଷି ମୁହଁ ଶୁଖାଇ ଖର ନିଃଶ୍ୱାସ ପକାଇ ବାଧହୋଇ ବାହାରିଲେ ଭୋଜିଖାଇ । ବାଟଯାକ ସେଇ କଅଣ ହେଲା, କଅଣ କରିବା, ସବୁଗଲା, ଏହିପରି କହି ହେଉଥାନ୍ତି । କିନ୍ତୁ ବୁଢ଼ା ଋଷିଙ୍କର ସେଇ, ଦେଖ, ହରି କରେ କି ? ଏହା ଶୁଣି କେତେକ ସେ ବୁଢ଼ା କଥାକୁ ଉଡ଼ାଇ ଦେଉଥାନ୍ତି । ମାତ୍ର ବୁଢ଼ାର ସେହି ଦେଖ, ହରି କରେ କି ?

ଏହିପରି ହୋଇ ସମସ୍ତେ ପହଞ୍ଚିଲେ ଭୋଜି ଜାଗାରେ । ଅସୁରଯାକ ଚାହିଁ ବସିଥିଲେ । ଯେ ସବୁ ପହଞ୍ଚିବାରୁ ଭୋଜିର ଯୋଗାଡ଼ ହେଲା । ବଡ଼ ବଡ଼ ମଞ୍ଜ କଦଳୀ ପତ୍ର ପଡ଼ିଗଲା । ଋଷିମାନେ ତଳ ଉପରକୁ ଚାହିଁ ଖରନିଃଶ୍ୱାସ ପକାଇ ବସିଲେ । ସେତେବେଳେ ମଧ୍ୟ ବୁଢ଼ାଋଷି କହୁଥା'ନ୍ତି – ଦେଖ, ହରି କରେ କି ? ଏହା ଶୁଣି ଅନେକ କହିଲେ – ଇଲେତ ମୁଣ୍ଡା ମୁଣ୍ଡା ଗାଇ, ଘୁଷୁରି ମାଉଁସ ବଡ଼ା ହବ, ଆଉ ଦେଖ, ହରି କରେ କି ? କାହିଁକି କହୁଚ, ତଥାପି ବୁଢ଼ାର ସେଇ କଥା ।

ପରକ୍ଷା ପରଷି ସରିଗଲା । ଏଣିକି ହାତ ଚାଲିବାର କଥା । ସବୁ ଅସୁର ଚାହିଁ ଠିଆ ହୋଇଥା'ନ୍ତି । ଏତିକିବେଳେ ସେ ବୁଢ଼ା ଋଷି ଅସୁରମାନଙ୍କୁ କହିଲେ – ଦେଖ ସବୁ ତ ପତ୍ରରେ ଲାଗିଗଲା । ଏଣିକି ଆମର ଖାଇବାର କଥା; କିନ୍ତୁ ଆମର ଗୋଟିଏ କଥା, ସେତକ ହୋଇଗଲେ ଆମେ ଖାଇବା ପିଇବା ଆରମ୍ଭ କରିବୁ ।

ଅସୁରମାନେ କହିଲେ – ସେ କି କଥା ? ବୁଢ଼ା ଋଷି କହିଲେ – କଥା କଅଣ କି ? ଆମକୁ ଯେ ନିମନ୍ତ୍ରଣ କରନ୍ତି, ତାଙ୍କ ଭିତରେ ଯେ ବଡ଼, ସେ ଆମ ସଙ୍ଗେ ବସିଲେ, ଆମେ ଖିଆ ପିଆ କରୁ । କଥା ଏତିକି ଆଉ କିଛି ନୁହେଁ ।

ଯା ଶୁଣି ଜଣେ ଅସୁର କହିଲା – ଏୟା ତ ? ହଉ ହେଲା ତେବେ ଆମ ଭିତରେ ଯେ ବଡ଼ ସେ ବସୁ । ଯା ଶୁଣି କିଏ କହିଲା – ମୁଁ ତ ସବୁଠାରୁ ବଡ଼ ମୁଁ ବସୁଛି । ଆଉ ଜଣେ କହିଲା – ମୁଁ ଥାଉ ଥାଉ ତୁ କିମିତି ବଡ଼ ହେବୁ ? ତା'ପରେ କିଏ କହିଲା – ମୁଁ ବଡ଼ । ଦେଖୁ ଦେଖୁ ଜଣ ଜଣ ହୋଇ ସମସ୍ତେ କହିଲେ ମୁଁ ବଡ଼ । ଏପରି ହେଉ ହେଉ କିଏ ବଡ଼ ଠିକଣା ହୋଇପାରିଲା ନାହିଁ । ସେଇ ବଡ଼ ନେଇ ଅସୁରଙ୍କ ଭିତରେ ମରାମରି ପିଟାପିଟି ଲାଗିଲା । ଇମିତି ହବାରେ ଆଉ ବଡ଼ ବଛା ହୋଇପାରିଲା ନାହିଁ । ଋଷିମାନେ ଆଉ ଖାଇବେ କଅଣ, ଏ ଗୋଲକଧନ୍ଦା ଦେଖି ମନେ ମନେ ଖୁସି ହେଉଥା'ନ୍ତି ।

ଶେଷକୁ ଅସୁରମାନେ କହିଲେ – ହଇଓ ଋଷିମାନେ । ଆମର ତ ବଡ଼ କିଏ, ଠିକଣା ହୋଇପାରିଲା ନାହିଁ । ତେବେ ଆପଣମାନେ ଯା'ନ୍ତୁ । ଆମର ବଡ଼ ଠିକଣା ହେଲେ ଆମେ ତୁମକୁ ସବୁ ଡାକିବୁ ।

ଋଷିମାନେ ମନ ଆନନ୍ଦରେ ନିଶ୍ୱାସ ପକାଇ ସମସ୍ତେ ଡଗ ଡଗ ହୋଇ ପାଦ ପକାଇ ଆଶ୍ରମକୁ ଭିଡ଼ିଲେ । ବାଟରେ ବହୁତ ହସ କୁରୁଡ଼ି ହୋଇଗଲା । ସେତିକିବେଳେ ସେ ବୁଢ଼ାଋଷି କହିଲେ – ମୁଁ କ'ଣ କହୁଥିଲି – ଦେଖ, ହରି କରେ କି ? ଏବେ ଦେଖିଲ କଅଣ ହେଲା ?

ସମସ୍ତେ କହିଲେ – ସତକଥା, ଆପଣ ଯାହା କହୁଥିଲେ – ଦେଖ, ହରି କରେ କି ? ପ୍ରକୃତରେ ହରି ବିଚାରିଲେ ନ ହୁଏ କଅଣ ?



# ପଣ୍ଡିତଙ୍କ ଚଣ୍ଡୀପାଠ

ଗୋଟିଏ ଗ୍ରାମରେ ଜଣେ ପଣ୍ଡିତ ଥିଲେ । ପଣ୍ଡିତଙ୍କ ଘରେ କେବଳ ତାଙ୍କ ଭାର୍ଯ୍ୟାଟି । ପିଲାପିଲି ତାଙ୍କର ନ ଥିଲା । ପଣ୍ଡିତେ ଦାଣ୍ଡ ବେଭାର ବୁଝନ୍ତି, ଭାର୍ଯ୍ୟା ରୋଷେଇବାସ ଆଉ ଘରକରଣା କରନ୍ତି । ଏହିପରି ଦୁଃଖେ ସୁଖେ ଦିନ କଟୁଥାଏ । ଦିନେ ପଣ୍ଡିତେ ଗାଧୋଇ ପାଧୋଇ ନିତ୍ୟକର୍ମ ସାରି ବସିଥା'ନ୍ତି । ଭାର୍ଯ୍ୟା ଚୁଲି ଲଗାଇ ଦି'ଜଣଙ୍କ ମାନିଆ ମୁଗଜାଇ ଗଣ୍ଡେ ବସାଇଦେଇ ଦେଖେ ତ ଭାତ ରାନ୍ଧିବାକୁ କୁଣ୍ଡରେ ପାଣିନାହିଁ । ସେ ଦେଖିଲା ଯେ, ଏତିକିବେଳୁ ପାଣି ନ ଆଣିଲେ ତ ଚଳିବ ନାହିଁ । ପୋଖରୀ ପୁଣି ପାଖ ନୁହେଁ, ଟିକିଏ ଦୂର । ଡାଲି ବସାଇ ଦେଇ ପଣ୍ଡିତଙ୍କୁ କହିଲା – ମୁଁ ଡାଲି ବସାଇ ଦେଇଛି, ଘରେ ପାଣି ନାହିଁ, ମୁଁ ପାଣି ଆଣିବାକୁ ଯାଉଛି । ତୁମେ ଟିକିଏ ଡାଲି ଦେଖ, ନ ହେଲେ ଉତୁରିପଡ଼ିବ, ସବୁ ଚୁଲିରେ ଯିବ । ୟା କହି ଭାର୍ଯ୍ୟା ଗଲା ପାଣିପାଇଁ ।

ପଣ୍ଡିତେ ପଡ଼ିଲେ ମୁଷ୍କିଲରେ । କାହିଁକି ନା, ସେ କେବେ ରୋଷେଇବାସ କରିନାହାନ୍ତି, କି ଦେଖିନାହାନ୍ତି । କ'ଣ କରିବେ, ଟିକେ ଭାବିଲେ ମନରେ ଗୋଟେ ଦମ୍ଭ ଆସିଲା – ଏୟାତ ? କିଛିନାହିଁ, ଚଣ୍ଡୀପାଠରେ ନ ହୋଇପାରେ କଅଣ ? ଡାଲି ଉତୁରିବା ତ ଗୋଟେ ସାମାନ୍ୟ କଥା । ଚଣ୍ଡୀରେ କେତେ ବଡ଼ ବଡ଼ କାମ ହୋଇଯାଉଛି, ଏଇଟା କଅଣ ବଳିଯିବ । ୟା ବିଚାରି ଗୋଡ଼, ହାତ, ମୁହଁ, କାନ ଧୋଇ ଦିଅଁଙ୍କ ଘରେ ବିନିଯୋଗ କରି ଚଣ୍ଡୀପାଠରେ ବସିଗଲେ । ପଣ୍ଡିତେ ତ ରହିଲେ ଚଣ୍ଡୀରେ, ଭାର୍ଯ୍ୟା ତ ଗଲା ପାଣିପାଇଁ । ଡାଲିପାଖେ ଆଉ କେହି ରହିଲେ ନାହିଁ । ଏଥିମଧ୍ୟରେ ଚୁଲି ହୁ ହୁ ଜଳିବାରେ ଡାଲି ଉତୁରି ସବୁତକ ଚୁଲିକି ଗଲା, ଚୁଲି ମଧ୍ୟ ପାଣି ପଶିବାରେ ବିବାକ ଲିଭିଗଲା । ସେ ଓଦା ଚୁଲି ମଧ୍ୟ ପୁଣି ଲଗାଇବା କାଠିକର ପାଠ ।

ଭାର୍ଯ୍ୟା ଡାଲି ପାଇଁ ପାଣି ମାଠିଆଟେ କାଖେଇ ଲସର ପସର ହୋଇ ଧାଇଁଚି । ଆସି ଦେଖେ ତ ସର୍ବନାଶ, ଚୁଲି ପାଖେ କେହିନାହିଁ । ଡାଲିତକ ଉତୁରି ସବୁ ଚୁଲିରେ ଯାଇଛି । ତେଣେ କ'ଣ ନା ଚଣ୍ଡୀଗୁଣା ଲାଗିଚି । ଯା ଦେଖି ସେ ରାଗରେ ଦୌଡ଼ିଯାଇ ପଣ୍ଡିତଙ୍କୁ କହିଲା – ମୁଁ ପରା ତୁମକୁ କହିଥିଲି ଡାଲି ପାଖେ ବସିବାକୁ । ତୁମେ ସେକଥା ନ କରି ଏତିକିବେଳକୁ ବସିଲ ଚଣ୍ଡୀଗୁଣି, ଏଲେ ଖାଇବ କଅଣ ? ସବୁତକ ଡାଲି ଉତୁରି କରି ଚୁଲିରେ ଯାଇଛି । ପଣ୍ଡିତେ ଏକଥା ସତ ନ କରି କହିଲେ – କିଆଁ ମିଛକଥା ଗୁଡ଼େ କହୁଚୁ ମ ? ମୁଁ ପରା ଡାଲି ନ ଉତୁରିବାକୁ ଚଣ୍ଡୀରେ ବସିଲି । ଯା'ଠଉଁ କଅଣ ଡାଲିପାଖେ ବସିବାଟା ବଡ଼ ? ହଇଲୋ । ଚଣ୍ଡୀରେ କେଡ଼େ ବଡ଼ ବଡ଼ କାମ ହୋଇଯାଉଛି, ସେଥିରେ ଡାଲି, ନା ଡାଲିବୋପା ଉତୁରିପାରେ ? ଯା କେବେ ହୋଇ ନ ଥିବ ।

ଭାର୍ଯ୍ୟା ଯା ଶୁଣି କହିଲା – ପଣ୍ଡିତ ହବାରୁ ଇମିତି ବୁଦ୍ଧିହେଲା ନା କ'ଣ ? ଆୟେ, ଶୁଣିଲେ ଲୋକେ ହସିବେ । ହୟେ, ରନ୍ଧାବଢ଼ା ପାଇଁ କିଏ ଚଣ୍ଡୀ ଗୁଣେ ? ଏବେ ଆସ, ଦେଖ, ତୁମ ଚଣ୍ଡୀପାଠରେ କ'ଣ ହୋଇଛି । ପଣ୍ଡିତେ ଯାଇ ଦେଖନ୍ତି ତ ସତକୁ ସତ ଡାଲିତକ ସବୁ ଯାଇଛି । ବଡ଼ ବ୍ୟସ୍ତ ହେଲେ; ସେହିଦିନ ଠାରୁ ଚଣ୍ଡୀରେ ଆଉ ତାଙ୍କର ବିଶ୍ୱାସ ରହିଲା ନାହିଁ ।

ଲୋକେ ଶୁଣି ହସିଲେ । ଏଣିକି ପଣ୍ଡିତଙ୍କୁ ଚିଡ଼ାଇବା ପାଇଁ କିଏ କେତେ ଅସମ୍ଭବ କଥା କହିଲା । କିଏ କହିଲା – ପଣ୍ଡିତେ । ମୋ ବଳଦଟା ଜମା ଦୁଧ ଦେଲା ନାହିଁ । ସେଥିକି ଚଣ୍ଡୀ କଲେ ହବ ? କିଏ କହିଲା – ଖୁଆଇ ପିଆଇ ଏଡ଼େ ଷଣ୍ଢଟେ କଲି, ଜନମ କଲାନାହିଁ, ବାଞ୍ଝା ହୋଇରହିଲା । ଚଣ୍ଡୀକଲେ କ'ଣ ଫଳ ଫଳିବ ? ଏହିପରି କିଏ କେତେ ଟାହି ଟାପରା କଲେ । ପଣ୍ଡିତେ ବିଚରା ଆଉ ଯିବେ କୁଆଡ଼େ ? ପଛକୁ ଦିନାକେତେ କାହାକୁ ଦେଖାଦେଲେ ନାହିଁ, କି ଆଉ ଚଣ୍ଡୀ ନାଁ ଧଇଲେ ନାହିଁ ।



# ଆପଣ ତ ଆଗୁଆ କାମ କରିବାକୁ କହିଥିଲେ

ଜଣେ ବାବୁଙ୍କ ଘରେ ଗୋଟେ ଚାକର ଥିଲା । ଚାକରଟା ଯିମିତି ଅଳସୁଆ, ସେମିତି ଓଲୁ । କେବେହେଲେ ଦରକାର ବେଳକୁ କାମ କରି ରଖେ ନାହିଁ । ଗାଧୁଆ ବେଳକୁ ପାଣି ରଖି ନ ଥାଏ, କହିଲେ ଦିଏ । କଚେରି ବାହାରିଲା ବେଳକୁ ପାନ ଭାଙ୍ଗି ନଥାଏ, କହିଲେ ଭାଙ୍ଗେ । ରେଳକୁ ବାହାରିଲା ବେଳକୁ ବେଡିଂ ବନ୍ଧା ନଥାଏ, କହିଲେ ବାନ୍ଧେ । ଏହିପରି ସବୁକାମ କହିଲେ କରେ । ଏଥିରେ ଅନେକ ସମୟରେ ବାବୁଙ୍କର କାର୍ଯ୍ୟରେ ବାଧା ଘଟେ । ଇମିତି କାମରେ ଯେ କେହି ଚିଡ଼ିବାର କଥା । ବାବୁ ଅନେକ ସମୟରେ ଚିଡ଼ନ୍ତି ଏବଂ କହନ୍ତି; କିରେ ! ରୋଜ ରୋଜ ଯାହା ହବାର କଥା, ତାହା ତ ଦେଖୁଚୁ, ଆଗୁଆ କାମ କରି ରଖୁନାହୁଁ କିଆଁ ? ଯେବେ କାମ ନ କରି ଏହିପରି ହଇରାଣ କରିବୁ, ତେବେ ତୋ ଚାକିରି ଦରକାର ନାହିଁ । ଚାକିରି ଯିବା ଭୟ ହେବାରୁ ଏଣିକି ସେ ସବୁକାମ ଆଗୁଆ କରିବାକୁ ମନେ ମନେ ପାଞ୍ଚିଲା ।

ଚାକର ରହିବାର ଅଳ୍ପଦିନ ପରେ ବାବୁଙ୍କ ପୁଅ ବେମାର ପଡ଼ିଲା । ବାବୁଙ୍କର ସେଇ ଗୋଟିଏ ପୁଅ । ଆଉ ପୁଅ ଝିଅ ନ ଥିଲା । ବାବୁ ବଡ଼ଲୋକ, ଟଙ୍କା ପଇସାର ଅଭାବ ନାହିଁ । ଚିକିତ୍ସା ପାଇଁ ବଡ଼ ଡାକ୍ତର ଡକାଗଲା; ଦାନପୁଣ୍ୟ ମଧ୍ୟ ବହୁତ ହେଲା । ଡାକ୍ତର ରୋଜ ଦି'ବେଳା ଦେଖୁଛନ୍ତି; ଔଷଧ, ଇଞ୍ଜେକସନ୍ ଦେଉଛନ୍ତି । ମାସ ମାସ ଧରି ଚିକିତ୍ସା ହେଲା । ତେବେ ସୁଦ୍ଧା ପୁଅ ଭଲ ହେଲାନାହିଁ । ଚାକର ଡାକ୍ତର ଆସିବା ଦେଖୁଛି, ରୋଗ ନ ଛାଡ଼ିବା ମଧ୍ୟ ଜାଣୁଛି ।

ଦିନେ ସକାଳବେଳା ଡାକ୍ତର ଆସି ରୋଗୀ ଦେଖୁଛନ୍ତି, ବାବୁ ତାଙ୍କ ପାଖେ ବସିଛନ୍ତି । ଚାକର ସେଠେଇଁ କେତେକାଳ ଠିଆ ହେଲା । ଦେଖି ଦେଖି ତା ମନକୁ କ'ଣ ପାଇଲା କେଜାଣି, ସେଠାରୁ ପଳାଇଆସି ଗୋଟେ କୁରାଢ଼ି ଧରି ବାଡ଼ିଆଡ଼କୁ ଗଲା । ବାଡ଼ିରେ ପାଞ୍ଚ ସାତ ଗାଡ଼ି କାଠ ଜମା ହୋଇଥାଏ । ଚାକର କୁରାଢ଼ି ଧରି କାଠ ଚିରିବାକୁ ଲାଗିଲା । ଝାଳନାଳ ହୋଇ ଗୁଡ଼େ କାଠ ମଧ୍ୟ ଚିରିଲା । ତେବେ ସୁଦ୍ଧା ତା' ମନ ନ ମାନିବାରୁ ଆହୁରି ଗୁଡ଼ିଏ ଚିରୁଥାଏ ।

ତେଣେ ଡାକ୍ତରଙ୍କ କାମ ସରିବାରୁ ସେ ଘରକୁ ଗଲେ । ସେତେବେଳକୁ ବାବୁଙ୍କର କଚେରି ବେଳ ହୋଇଯାଇଥାଏ । ସେ ତରବର ହେଉଥା'ନ୍ତି, ଗାଧୋଇ ଗଣ୍ଡେ ଖାଇଲେ କଚେରି ଯିବେ । ଦେଖିଲା ବେଳକୁ କୁଣ୍ଡରେ ପାଣି ଦିଆହୋଇନାହିଁ, କି ଚାକର ମଧ୍ୟ ଘରେ ନାହିଁ । ତାକୁ ରାଗିଯାଇ ବଡ଼ ପାଟିରେ ଚାକରକୁ ଡାକିଲେ । ଚାକର ଡାକ ଶୁଣି ଯାଉଛି ବୋଲି କହି ଆସୁ ନ ଥାଏ । ବାବୁ ଅଧିକ ରାଗିଯାଇ ବାଡ଼ିପଟକୁ ଯାଇ ଦେଖନ୍ତି ତ ଚାକର କାଠ ଚିରୁଛି । ସେ ରାଗରେ କହିଲେ – କିରେ ଯେ କ'ଣ କାଠ ଚିରିବା ବେଳ ? ଏତେ କାଠ କିଆଁ ଚିରୁଚୁ ?

ଚାକର କହିଲା – ଆଜ୍ଞା । ଆଗୁଆ କାମ ନ କରୁଛି ବୋଲି ତ ଆପଣ ରାଗୁଛନ୍ତି । ଦରକାର ବେଳକୁ କାମ କରି ରଖିବାକୁ ତ କହିଛନ୍ତି । ଆଉ ନ କରନ୍ତି କିମିତି ?

ବାବୁ କହିଲେ – ହଁ, ଦରକାର ବେଳକୁ କାମକରି ରଖିବାକୁ ମୁଁ କହିଛି ଯେ ବର୍ତ୍ତମାନ ଆମର ଚିରାକାଠ କି ଦରକାର ?

ଚାକର କହିଲା – ଆଜ୍ଞା, ପୁଅସାଆନ୍ତଙ୍କର ଯାହା ଅବସ୍ଥା ହେଲାଣି, ସେ ଆଉ କ'ଣ ଉଧୁରିବେ । ଆଜି କି କାଲି ସେ ଚାଲିଯିବେ । ଏହା ମତେ ଜଳଜଳ ଦିଶିଲାଣି । ସେତେବେଳକୁ ତ କାଠ ଦରକାର, ନ ହେଲେ ଆପଣ ମତେ ଆଉ ରଖିବେ ? ମଶାଣିରେ ତ କାଠ ଦରକାର । ସେଥିପାଇଁ ଆଗକୁ କାଠତକ ଚିରି ରଖିଥିଲେ ମୁଁ ଖଲାସ ।

ବାବୁ ଚାକରଠାରୁ ଏ ଅଶୁଭ କଥା ଶୁଣି ନିଆଁ ପରି ଜଳି ଉଠିଲେ । ସେ ସମ୍ଭାଳି ହୋଇ ନ ପାରି ଚାକର ପାଖକୁ ଦଉଡ଼ିଯାଇ ରାଗରେ ଯାହା ଅଭାଷା ଦୁର୍ଭାଷା କହିଲେ ତ କହିଲେ, ତା' ଉପରେ ବିଧା, ଗୋଇଠା ଚାପୁଡ଼ା ପଣିଦେଇଗଲେ । ମାଡ଼ଦାଉରେ ଚାକର ବେହୋସ ହୋଇପଡ଼ିଗଲା । ବାବୁଆଣି ଦୌଡ଼ି ଆସି ସେସବୁ ଶୁଣି ଯାହା ବକାବକି କଲେ, ଶତ୍ରୁକୁ ମଧ୍ୟ ଲୋକେ ଏପରି ଗାଳି ଦିଅନ୍ତି ନାହିଁ । ଗାଳି ନ ଦିଅନ୍ତେ କିପରି ? ଏହା କାହା ଦିହ ସହିବ ? ଚାକର ନିଜ ଗୁଣରୁ ଗୁଡ଼େ ମାଡ଼ଗାଳି ଖାଇ ସାଙ୍ଗେ ସାଙ୍ଗେ ତଡ଼ାହେବାରେ ବାବୁ ବାବୁଆଣୀ ଶାନ୍ତ ପଡ଼ିଲେ ।

ବାବୁଙ୍କ ମନ ନେବାକୁ ଚାକର ଯେଉଁ ଆଗୁଆ କାମ କରିଥିଲା, ତା'ର ପୁରସ୍କାର ଯା ନ ହୋଇ ଆଉ କ'ଣ ହୁଅନ୍ତା ?



# ବାବାଜିଙ୍କ ପୋଷା ବିଲେଇ

ଜଣେ ବାବାଜି ନିଜ ମଠରେ ଗୋଟିଏ ବିଲେଇ ପୋଷିଥିଲେ । ସେ ବିଲେଇକି ଭାରି ଭଲ ପାଆନ୍ତି । ବିଲେଇ ମଧ୍ୟ ବାବାଜିଙ୍କି ପାଇଲେ ତାଙ୍କୁ ଛାଡ଼ି କୁଆଡ଼େ ଯାଏନାହିଁ । ସେ ସବୁବେଳେ ତାଙ୍କରି କୋଳରେ ଶୁଏ । ସେ ଧ୍ୟାନରେ ବସିଲାବେଳେ ମଧ୍ୟ ବିଲେଇଟି ତାଙ୍କରି କୋଳରେ ଶୋଇ ଘୁଡୁରୁ ଘୁଡୁରୁ ହେଉଥାଏ । ଏକଥା ସେ ମଠର ଚେଲା ବାବାଜି, ଚାକର ବାକର ସମସ୍ତେ ଜାଣନ୍ତି । କେତେ କାଳ ପରେ ବାବାଜି ମଲେ, ବିରାଡ଼ି ମଧ୍ୟ ମଲା । ତାହାପରେ ଚେଲା ମଠର ମହନ୍ତ ହେଲେ । ସେ ଗୁରୁଙ୍କ ପରି ଧ୍ୟାନ କରିବାକୁ ଯେଉଁଦିନ ନୂଆହୋଇ ବସିଲେ, ସେଦିନ ଆଗ ଖୋଜାହେଲା ଗୋଟେ ବିଲେଇ; କାହିଁକି ନା ସ୍ୱାମୀଜୀ ଧ୍ୟାନରେ ବସିଲେ ତାଙ୍କ କୋଡ଼ରେ ଗୋଟେ ବିଲେଇ ଶୋଉଥିଲା । ଏହା ସେ ଗୁରୁଙ୍କ ଧ୍ୟାନରେ ଦେଖିଛନ୍ତି । ତାଙ୍କର ବିଶ୍ୱାସ ଗୋଟେ ବିଲେଇ କୋଡ଼ରେ ନ ଶୋଇଲେ ଧ୍ୟାନର ଫଳ ହୁଏ ନାହିଁ । ତେଣୁ ମଠର ଚାକର ବାକର ସମସ୍ତେ ବିଲେଇ ଖୋଜି ଲାଗିଲେ । କୁଆଡୁ କେମିତି ଗୋଟେ ବିଲେଇ ଧରାପଡ଼ିଲା; ମାତ୍ର ସେ ପୋଷା ନୁହେଁ । ତାକୁ ମହନ୍ତଙ୍କ କୋଳରେ ଛାଡ଼ି ଦେବାରୁ ସେ ଡିଆଁ ମାରି ଚାଲିଗଲା । ବିରାଡ଼ି ନ ହେବାରୁ ସେ ଦିନ ଧ୍ୟାନ ବନ୍ଦ ।

ସତ କଥା, ବିରାଡ଼ି ନ ହେଲେ ଧ୍ୟାନ କିପରି ହେବ ?



# ଶ୍ରାଦ୍ଧ କୁକ୍‌କୁରୀ

ଜଣେ ଭଦ୍ରଲୋକ ସଉକିରେ ଗୋଟିଏ କୁକ୍‌କୁରୀ ପୋଷିଥିଲେ । ସେ ଖାଇପିଇ ପୋଷାକିରେ ଘରେଥାଏ; କିନ୍ତୁ ଘରେ ଯେଉଁଦିନ ଶ୍ରାଦ୍ଧ ହୁଏ, ସେ ଦିନ ଦାଣ୍ଡରେ ଗୋଟେ ଖୁଣ୍ଟ ପୋତି କୁକ୍‌କୁରୀଟାକୁ ନେଇ ବାନ୍ଧି ଦିଅନ୍ତି । ନ ହେଲେ ସେ ଏଘର, ସେଘର ପଶି ଶ୍ରାଦ୍ଧ ଜିନିଷ ମାରା କରନ୍ତା । ସେ ଭଦ୍ରଲୋକର ପୁଅ ଶ୍ରାଦ୍ଧଦିନ କୁକ୍‌କୁରୀ ଦାଣ୍ଡରେ ବନ୍ଧା ହେବାର କାରଣ ଜାଣି ନ ଥିଲା । ସେ କେବଳ ବୁଝିଥିଲା – ଶ୍ରାଦ୍ଧ ହେଲେ ଦାଣ୍ଡରେ ଗୋଟେ କୁକୁର ବନ୍ଧା ହୁଏ । କେତେକାଳ ପରେ ସେ ଭଦ୍ରଲୋକ ମରିଗଲେ, ସେ କୁକ୍‌କୁରୀ ମଧ ମରିଗଲା । ତାଙ୍କର ବର୍ଷିକିଆ ଶ୍ରାଦ୍ଧ ପଡ଼ିଲା । ପୁଅ ତ ପୁଣି ଶ୍ରାଦ୍ଧ କରିବ । ଶ୍ରାଦ୍ଧ ପାଇଁ ସବୁ ଯୋଗାଡ଼ ହେଲା । ଦାଣ୍ଡରେ ମଧ ଗୋଟେ ଖୁଣ୍ଟ ପୋତାହେଲା । ଶ୍ରାଦ୍ଧ କରିବାକୁ ପୁଅକୁ ଡାକିବାରେ ସେ କହିଲେ – ସବୁ ହେଲା ଯେ, ଶ୍ରାଦ୍ଧ କୁକ୍‌କୁରୀ କାହିଁ ? ଖାଲି ଖୁଣ୍ଟଟେ ପୋତିଦେଲେ କ'ଣ ଶ୍ରାଦ୍ଧ ହୋଇଯିବ ? ସେ ଖୁଣ୍ଟରେ ତ ପୁଣି କୁକ୍‌କୁରୀଟିଏ ବନ୍ଧା ହେବା ଦରକାର । ଲୋକେ ଏହା ଶୁଣି ହସିଲେ । ସମସ୍ତେ ପଚାରିଲେ କିଏ, ଶ୍ରାଦ୍ଧ କୁକ୍‌କୁରୀ କ'ଣ ? ଯୋଗ୍ୟପୁତ୍ର ଉତ୍ତର ଦେଲେ – ଦେଖୁ ନାହଁ ? ଶ୍ରାଦ୍ଧ ଦିନ ବାପା କିପରି ଦାଣ୍ଡରେ କୁକ୍‌କୁରୀ ବାନ୍ଧୁଥିଲେ ? ଲୋକେ ପୁଣି ପ୍ରକୃତ କଥା ବୁଝାଇ ଦେବାରେ ପୁଅ ଶ୍ରାଦ୍ଧରେ ବସିଲେ । ନ ହେଲେ କୁଆଡ଼ୁ ହେଲେ ଗୋଟେ କୁକୁର ଧରାହୋଇ ବନ୍ଧା ହୋଇଥା'ନ୍ତା ।

ଧନ୍ୟ ହେ ଯୋଗ୍ୟ ପୁତ୍ର ।



# ମୋହନବାବୁଙ୍କ କୋଳିଖିଆ

ଜଣେ ଭଦ୍ରଲୋକଙ୍କର ଗୋଟେ ବଡ଼ ଭୋଜି ହେଲା । ସେ ବହୁତ ଲୋକଙ୍କୁ ନିମନ୍ତ୍ରଣ କଲେ । ମୋହନବାବୁଙ୍କୁ ମଧ୍ୟ ନିମନ୍ତ୍ରଣ ଥିଲା । ମୋହନବାବୁଙ୍କ ଘର ଟିକିଏ ଦୂରରେ । ସେ ଭୋଜି ଖାଇବାକୁ ଆସୁ ଆସୁ ବାଟରେ ତାଙ୍କୁ ଅତର୍କ୍ଷା ଝାଡ଼ା ତଲବ ହେଲା । ଜଙ୍ଗଲ ଜାଗା ଦେଖି ସେ ଝାଡ଼ା ବସିଲେ । ସେଠାରେ ତାଙ୍କ ମୁଣ୍ଡ ଉପରକୁ ଗୋଟେ କୋଳି ଗଛ ଥିଲା । କୋଳି ସବୁ ପାଚି ଯାଇଥାଏ । କୋଳି ସବୁ ଲାଛି ହୋଇ ରହିବାରେ ଡାଳସବୁ ନଇଁ ପଡ଼ିଥାଏ । ପବନ ହେଲା ବେଳେ ଗୋଟେ ଡାଳ ମୋହନବାବୁଙ୍କ ମୁହଁରେ ଥରେ ଥରେ ବାଜି ଯାଉଥାଏ । ସେ କୋଳି ଲୋଭରେ ସେହି ଡାଳକୁ ଚାହିଁ ରହିଥା'ନ୍ତି । ଯେତେବେଳେ ପବନରେ ଡାଳଟା ମୁହଁରେ ଲାଗିଗଲା, ସେତେବେଳେ ସେ ଟାକୁକିନା ଗୋଟେ ମୁହଁରେ ଧରିନେଲେ । ଚାକୁଳି ଚାକୁଳି କରି ସେ କୋଳିଟି ମଧ୍ୟ ଖାଇଲେ ସିନା, ଶୌଚ ନ କରି ଖାଇବା କଥା କାଳେ କିଏ ଦେଖିଥିବ ସେଥିପାଇଁ ମନରେ ଧୁଡୁପୁଡୁ ହେଉଥିଲେ । ଚାରିଆଡ଼କୁ ଚାହିଁଲେ; ମାତ୍ର କାହାରିକି ଦେଖିଲେ ନାହିଁ । ତଥାପି ଚୋର ମନ ଚୋର ଗଣ୍ଠିରେ ରହିଲା ପରି ମନେ ମନେ ଚୋର ଚୋର ହେଉଥା'ନ୍ତି । ସେ ଶୌଚ ସାରି ଭୋଜି ସ୍ଥାନକୁ ଗଲେ । ସେ ପହଞ୍ଚିଲା ବେଳକୁ ନାଟ ହେଉଛି । ନାଟପିଲା ଗୀତ ଆରମ୍ଭ କରିଦେଇ ଗାଉଛି –

"ଛି ଛି କି କର୍ମ କଲ ହେ ମୋହନ ।
ଆସୁ ଆସୁ ପରା ପଥ ହୁଡ଼ିଲ ହେ ମୋହନ ।"

ନାଟପିଲା ଏତିକି ଯେମିତି ବୋଲିଛି, ମୋହନ ବାବୁଙ୍କର ବିଶ୍ୱାସ ହେଲା, ଏ ପିଲା ନିଶ୍ଚୟ ମୋ କୋଳିଖିଆ ଦେଖିଛି । ନ ହେଲେ ସେ ସତକଥା ଜାଣନ୍ତା ବା କିପରି ? ଯାହା ହବାର ତ ହୋଇସାରିଛି । ଏ ଟୋକା ଯେବେ ସବୁ କଥା କହି ଦିଏ, ତେବେ ମୋର ମାନ ମହତ୍ତ୍ୱ ସବୁ ଯିବ । ସୁତରାଂ ଯାକୁ କିଛି ପଇସା ଦେଇ ବନ୍ଦ କରିଦେବା ଭଲ । ଏହା ବିଚାରି ସାଙ୍ଗେ ସାଙ୍ଗେ ଗୋଟେ ଅଧୁଲି ସେ ନାଟ ପିଲାଙ୍କୁ ଧରାଇ ଦେଲେ; ମାତ୍ର ଏଥିରେ ଗୀତ ବନ୍ଦ ହେବ କ'ଣ, ନାଟପିଲା ମୋହନବାବୁଙ୍କୁ ଗ୍ରାହକ ବିଚାରି ତାଙ୍କ ସାମନାରେ ବସି ମୁହଁ ହାତ ହଲାଇ ପୁଣି ବୋଲିଲା –

"ବିଚାରିଛ କେହି ଜାଣନ୍ତି ନାହିଁ,
ସବୁ ଉଦନ୍ତ ପାଇଅଛି ମୁହିଁ, ହେ ମୋହନ ।"

ନାଟପିଲା ପୁଣି ଏତିକି ବୋଲିବାରେ ମୋହନବାବୁଙ୍କର ବିଶ୍ୱାସ ହେଲା – ଏ ପିଲା ନିଷ୍ଟେ ଦେଖିଛି । ସେଥିପାଇଁ ତ ଅଧୁଲିଟିଏ ଦେଲି । ଫେର୍ କ'ଣ ? ତେବେ ଆଉ ଟିକିଏ ବେଶି ହେଲେ ହେବ । ଏହା ବିଚାରି ପକେଟରେ ଯେଉଁ ଚାରୋଟି ସୁଉକି ଥିଲା, ସେ ସବୁତକ ଦେଇଦେଲେ ।

ନାଟପିଲା ଚାରୋଟି ସୁଉକି ପାଇ ଭାବିଲା – ସଭା ମଧ୍ୟରେ ଏ ବାବୁଟି ବଡ଼ ଗ୍ରାହକ । ସୁତରାଂ ଆହୁରି ଗାଇଲେ ଆହୁରି ମିଳିବ ବୋଲି ଭାବି ପୁଣି ଗାଇଲା –

"ବଡ଼ ଲୋକଙ୍କର ବଡ଼ ବେଭାର,
ଆଜିଠାରୁ ତାହା ହେଲା କି ଦୂର, ହେ ମୋହନ ।"

ମୋହନବାବୁ ପଦ ଉପରେ ପଦ ଶୁଣି ଅତର୍କରେ ତାଙ୍କ ପାଖରେ ଯାହା ଅଧୁଲି ସୁଉକି ଥିଲା, ସବୁ ଦେଇ ସାରିଛନ୍ତି । ପୁଣି ପଦ ପଡ଼ିବାରେ ଆଉ ଦବାକୁ କିଛି ନ ଥିଲା । ସୁତରାଂ ବିରକ୍ତ ହୋଇ କହିଲେ – ଭାସିଗଲା କ'ଣ ? ତୁମ ମୁହଁରେ ସେ ବାଜିଥିଲେ, ତୁମେ କ'ଣ ଖାଇ ନ ଥା'ନ୍ତ ?

ସଭାଲୋକେ ଏହା ଶୁଣି କେହି କିଛି ବୁଝି ନ ପାରି କାବା ହୋଇ ପଚାରିଲେ କିଓ, କଥା କ'ଣ ? ଫିଟାଇ କହୁନାହଁ ? ଏପରି କାହିଁକି କହୁଛ ?

ମୋହନବାବୁ ଦେଖିଲେ ଯେ ବହୁତ ଧରାପଡ଼ିଲାଣି, ଆଉ ଲୁଚାଇବି କାହିଁକି ? ଏହା ଭାବି ସତକଥା ଫିଟାଇ କହିଲେ ।

ଲୋକେ ଶୁଣି ହସି ହସି ବେଦମ ହେଲେ ।

ପ୍ରକୃତରେ ନାଟପିଲା ଯେଉଁ ଗୀତ ବୋଲୁଥିଲା, ତାହା କୃଷ୍ଣଙ୍କ ପ୍ରତି ରାଧାଙ୍କର ଉକ୍ତି । କୃଷ୍ଣ ରାଧାଙ୍କ ନିକଟକୁ ଆସିବାକୁ କଣ୍ଟ ଦେଇ ସେଠାକୁ ନ ଆସି ଚନ୍ଦ୍ରାବଳୀଙ୍କ କୁଞ୍ଜକୁ ଯାଇ ଫେରିଥିବାରୁ ରାଧା ଏପରି କହୁଛନ୍ତି; କିନ୍ତୁ ମୋହନବାବୁ ବୁଝିଲେ – ତାହା ତାଙ୍କ କୋଳିଖିଆ କଥା । ଚୋର ମନ ତ ଗଣ୍ଠି ଉପରେ, ନ ବୁଝିବେ କିଆଁ ।

ମୋହନବାବୁ କେଡ଼େ ଓଲୁ ।



# କେଉଟଙ୍କ ନିଜ ଉପାୟ

ଦିନେ ପଞ୍ଚେ କେଉଟ ରାତିରେ ମାଛ ମାରି ବାହାରିଲେ । ମାଛ ପୋଖରୀ ତାଙ୍କ ଗାଁ'ଠୁ ଦୂରରେ । ତେଣୁ ସଞ୍ଜବେଳୁ ସମସ୍ତେ ଖିଆପିଆ ସାରି ଜାଲ ଖାଳେଇମାନ ଧରି ସଅଳସଅଳ ବାହାରି ପଡ଼ିଲେ । ଯାଉ ଯାଉ କେତେ ବାଟଠେଇଁ ସମସ୍ତଙ୍କୁ ନିଦ ଘାରିଲା । ସେତେବେଳକୁ ସେମାନେ ପୋଖରୀ ପାଖାପାଖି ହେଲେଣି । ନିଦ ସମ୍ଭାଳି ନ ପାରି ଜଣେ କହିଲା – ଭାଇ । ପୋଖରୀ ତ ପାଖେଇଲାଣି, ରାତି ପୁଣି ଗୁଡ଼ାଏ ଅଛି, ଚାଲ କାନିଖଣ୍ଡମାନ ପକାଇ ଦେଇ ଏଇଠାଇଁ କଡ଼େ କଡ଼େ ପଡ଼ିଯିବା । ପୁଣି ଅନ୍ଧାରୁଆରୁ ଉଠି ଭିଡ଼ିଯିବା । ନ ହେଲେ ନିଦଦାଉରେ ଝୁଣ୍ଟିକରି ପ୍ରାଣଯିବ । ସମସ୍ତଙ୍କର ତ ସେହି ଅବସ୍ଥା । ତେଣୁ ସେଥିରେ କେହି ନାରାଜ ନ ହେବାରୁ ସମସ୍ତେ ଶୋଇଲେ; ମାତ୍ର କାହାରିକୁ ନିଦ ହେଲାନାହିଁ । ଯା ଦେଖି ସମସ୍ତେ କାବା ହେଲେ । ଜଣେ କହିଲା – କିରେ ଭାଇ । ଯା କ'ଣ ହେଲା ? ଚାଲିଲାବେଳେ ତ ମଣିଷ ନିଦରେ ଘାରି ହୋଇଯାଉଥିଲା । ଶୋଇବାରେ ଯେ ଓଲଟା କ'ଣ ହେଲା ? ସମସ୍ତେ କହିଲେ – ସତ କଥା, ଯେ କ'ଣ ହେଲା ? ବୁଝୁବୁଝୁ ଜଣାଗଲା – ସେ ଯେଉଁଠି ଶୋଇଛନ୍ତି, ସେ ଜାଗାଟା ରଜାଘର ଫୁଲବଗିଚା । ଦକ୍ଷିଣା ପବନରେ ଫୁଲବାସନା ଚାରିଆଡ଼େ ଚହଟି ଯାଉଛି । ତାଙ୍କ ଭିତରୁ ଜଣେ ପୁରୁଖା ଲୋକ ଏ ଫୁଲ ବାସନା କଥା ଜାଣିପାରି କହିଲା – ହଇରେ ପିଲେ । ଦେଖୁଛଟିକି କେଡ଼େ ବାସନା କରୁଛି ? ଏଡ଼ିକି ବାସନାରେ ନିଦ କୁଆଡ଼େ ହବ ? ସମସ୍ତେ କହିଲେ – ସତ କଥା, ତେବେ କ'ଣ ଆହୁରି ଟିକିଏ ଦୂରକୁ ଯାଇ ଶୋଇବା ? ଏହାଶୁଣି ଜଣେ ବୁଢ଼ା କହିଲା – ମୁଁ ଦେଖୁଛି, ତୁମେ ସବୁ ନିର୍ବୁଦ୍ଧିଆ । ହଇରେ, ଫୁଲବାସନା ତ ? ଏଥିକି

କ'ଣ ଆମର ଉପାୟ ନାହିଁ । ଆଚ୍ଛା, ମୁଁ ଗୋଟାଏ ଉପାୟ କହୁଛି, କର, କିମିତି ନିଦ ନ ହେବ । ସମସ୍ତେ କହିଲେ – ହଉ, କହ । ସେ କହିଲା – ଆଚ୍ଛା, ସମସ୍ତଙ୍କ ପାଖରେ ତ ଆଇଁଷ ଖାଳେଇ ଅଛି । ତାକୁ ସବୁ ଦେଖି ନାକ ପାଖରେ ରଖି ଶୋଇଲ, ଦେଖିବା ନିଦ କେମିତି ନ ହବ । ଏକଥା ସମସ୍ତଙ୍କ ମନକୁ ପାଇଲା । ସମସ୍ତେ ଖାଳେଇଟିମାନ କାଢ଼ି ନାକ ପାଖରେ ରଖି ଶୋଇବାରେ ନିଦ କାହୁଁ କାହୁଁ ମାଡ଼ି ଆସିଲା । ଏତକ କରି ନ ଥିଲେ ଫୁଲ ବାସନାରେ ରାତିଟାଯାକ ଅନିଦ୍ରାରେ ପାହିଯାଇଥା'ନ୍ତା ।

ଦେଖିଲ ଟିକି ଖାଳେଇର କେତେ ଗୁଣ ?



# ମୁଁ ଜାଣେ, ଆପଣ ଦେବାନଙ୍କ ଗାଈ ନୁହନ୍ତି

ଜଣେ ରଜାଙ୍କର ଜଣେ ଦେବାନ ଥିଲେ । ଦେବାନଙ୍କ ରହିବା ଘର ଗୋଟେ ତିନିମହଲା କୋଠା ଏବଂ ତାହାର ଚାରିପାଖରେ ମଧ୍ୟ ପାଚେରି ଥାଇ ଗୋଟେ ବଡ଼ ହତା । ହତାର ଚାରିତରଫ ନାନା ପ୍ରକାର ଫୁଲଗଛରେ ଭରା । କୋଠାର ଠିକ୍ ସାମନାରେ ଗୋଟେ ବଡ଼ ଘାସପଡ଼ିଆ । ହତା ଭିତରେ ଘାସ ପଡ଼ିଆଟି ଦେଖିବାକୁ ବଡ଼ ସୁନ୍ଦର । ଘାସଗୁଡ଼ିକ ବଢ଼ିବାକୁ ରୋଜ ପିଚିକାରିରେ ପାଣିଦିଆଯାଏ । ସେଥିରୁ କାଠିକୁଟା ବଛାହେବାରେ ତାହା ନିର୍ମଳ ହୋଇଥାଏ । ଖାସ୍ ଏଥିପାଇଁ ଦୁଇ ଜଣ ଚାକର ନିଯୁକ୍ତ ଥାଆନ୍ତି । ଘାସ କିଆରି ଭିତର ଦେଇ ଯିବା ଆସିବା କରିବାକୁ ସମସ୍ତଙ୍କୁ ମନା । ସେଥିକି ଜଣେ ଚୌକିଦାର ରାତିଦିନ ପହରା ଦେଉଥାଏ । କେବଳ ଦେବାନଙ୍କ ଗାଈ ଯିବାକୁ ମନା ନ ଥାଏ ।

ଦିନେ ଜଣେ ଭଦ୍ରମହିଳା ଦେବାନଙ୍କ ସାଙ୍ଗେ ଦେଖାକରିବାକୁ ଆସିଲେ । ସେ ଜାଣି ନ ପାରି ସେଇ ଘାସପଡ଼ିଆ ଭିତର ଦେଇ ଗଲେ । ଏହା ଦେଖି ଚଉକିଦାର ଦଉଡ଼ିଯାଇ କହିଲା – ଆପଣ କାହା ହୁକୁମରେ ଏ ଘାସ ପଡ଼ିଆ ଦେଇଯାଉଛନ୍ତି ? ଯାହା ହବାର ହେଲାଣି, ଏବେ ମୋ କଥା ମାନି ବୁଲିକରି ଯା'ନ୍ତୁ ।

ଏଥିରେ ସେ ଭଦ୍ରମହିଳା ଅପମାନିତ ହୋଇ ରାଗିକରି କହିଲେ – ହଁ ବେ, ତୁ କାହାକୁ କଅଣ କହୁଚୁ ? ତୁ ଜାଣୁନା ଆମେ କିଏ ?

ଚଉକିଦାର କହିଲା – ଆଜ୍ଞା, ପ୍ରକୃତରେ ଆପଣ କିଏ, ମୁଁ ଜାଣେନା; କିନ୍ତୁ ମୁଁ ଭଲକରି ଜାଣେ ଯେ ଆପଣ ଦେବାନଙ୍କ ଗାଈ ନୁହନ୍ତି । ତାହା ହୋଇଥିଲେ ମୁଁ କାହିଁକି ମନା କରନ୍ତି ?

ଭଦ୍ରମହିଳା ଏତିକିରେ ଚୁପ୍ ହୋଇ ଅନ୍ୟ ବାଟେ ଗଲେ ।



# ଆମେ ତ ଇମିତି ଇମିତି

ଗୋଟିଏ ଗାଁ'ରେ ଗୁଡ଼ାଏ ତନ୍ତୀଘର ଥିଲା । ସେ ଗାଁ'ରେ ତନ୍ତୀ ଛଡ଼ା ଅନ୍ୟ ଜାତି ନ ଥିଲେ । ମାଧିଆ ବୋଲି ଗୋଟେ ତନ୍ତୀଟୋକା ଥିଲା । ପିଲାଦିନୁ ତା'ର ବାପା ମା ମରିଥିଲେ । ଘରର ଆଉ କେହି ନ ଥିଲେ । ଜମିବାଡ଼ି, ଟଙ୍କାକଉଡ଼ି କିଛି ନ ଥିଲା । ସେ ଗୋଟେ ମହା ଦରିଦ୍ର । ତେଣୁ ସେ ପିଲାଦିନୁ ମାଉସୀ ଘର ପିଉସୀ ଘର ବୁଲିବୁଲି ଦୁଇବେଳା ଖାଇବାଟା ଚଳାଉଥିଲା । ମାଧିଆ ଭେଣ୍ଡା ହେଲା । ଦିନେ ହେଲେ ଘରେ ରହେନାହିଁ, କି, କିଛି ହେଲେ ବ୍ୟବସାୟ କରେନାହିଁ । ରାଣ୍ଡୀପୁଅ ଅନନ୍ତା ପରି ନିଷ୍କର୍ମା ହୋଇ ପର ଘରେ ଖାଇ ପେଟପାଟଣା ଚଳାଏ । ଏପରି ଭେଣ୍ଡାକୁ ରୋଜ ବା କିଏ କାହିଁକି ଦବ ? ମାଧିଆ ଦେଖିଲା ଯେ ଏଣିକି ଆପଣା ଲୋକେ ସୁଦ୍ଧା ଗଣ୍ଡେ ଖାଇବାକୁ ଦେବାକୁ ନାରାଜ । ତେଣୁ ସେ ଗାଁ ଗାଁ ବୁଲି ଭିକ ମାଗିଲା । ଦିନେ ସେ ଗୋଟେ ଦୂରଗାଁ'କୁ ଗଲା । ସେଦିନ ସେ ବେଶି ଭିକ ପାଇବା ଆଶାରେ ପୈତାଟେ ପିନ୍ଧି ଚିତାଟଇତନ କାଟି ବ୍ରାହ୍ମଣ ବେଶରେ ସେ ଗାଁ'ରେ ଭିକ ମାଗିଲା ।

ସେ ଗାଁ'ରେ ଜଣେ ପୁରୋହିତ ଥିଲେ । ତାଙ୍କର ଗୋଟିଏ ସୁନ୍ଦରୀ ଝିଅ ଥିଲା । ତାହାର ବିବାହ ବୟସ ହୋଇଗଲା । ପୁରୋହିତ ଜୋଇଁ କରିବାକୁ ଭଲ ବରପାତ୍ରଟିଏ କେତେ ଖୋଜିଲେ; ମାତ୍ର ସେଭଳି ପାତ୍ରଟିଏ ପାଇଲେ ନାହିଁ । ସେ ବରପାତ୍ର ପାଇଁ ଦରାଣ୍ଡି ହଉଥା'ନ୍ତି ।

ମାଧିଆ ଦେଖିବାକୁ ସୁନ୍ଦର । କାର୍ଯ୍ୟ ନ କରି ବସି ବସି ଗଣ୍ଡିଟିଏ କରିଥାଏ । ସେଦିନ ସେ ଗାଁ'ରେ ଘରେ ଦି'ଘର ଭିକ ମାଗିସାରି ଭିକ ପାଇଁ ପୁରୋହିତଙ୍କ ପିଣ୍ଡାକୁ ଗଲେ । ପୁରୋହିତ ସେତେବେଳେ ପିଣ୍ଡାରେ ବସିଥିଲେ । ସେ ମାଧିଆର ଚିତା ପୈତା ଦେଖି ବୁଝିଲେ ମାଧିଆ ନିଶ୍ଚୟ ବ୍ରାହ୍ମଣ । ତା'ପରେ ତାର ରୂପ ମଧ୍ୟ ସୁନ୍ଦର । ୟା ସବୁ ଦେଖି ପୁରୋହିତ ଭାବିଲେ, ଏ ପିଲାଟିକି ଘରଜୋଇଁ କଲେ କ୍ଷତି କଅଣ ?

ତା'ପରେ ସେ ମାଧିଆ ସଙ୍ଗେ ବିବାହ ବିଷୟରେ କଥାବାର୍ତ୍ତା କଲେ । ମାଧିଆ ସେଥିକି ବା କାହିଁକି ନାରାଜ ହେବ ? ସେ ଦେଖିଲା ଯେ ପୁରୋହିତଙ୍କ ଘର ବଡ଼ଘର, ଗୋଟିଏ ଝିଅ ଛଡ଼ା ଆଉ ପୁଅଝିଅ ନାହାନ୍ତି । ଏଠାରେ ବିବାହ କଲେ ତ ସବୁ ସମ୍ପତ୍ତି ମିଳିବ, ସୁଖରେ ଦିନଯିବ; କାହିଁକି ମନା କରିବି ? ଏହା ଭାବି ଜୋଇଁ ହବାକୁ ମାଧିଆ ଜବାବ ଦେଲା । ପୁରୋହିତ ଖୁସି ହୋଇ ମାଧିଆକୁ ଘରେ ରଖିଲେ । କିଛିଦିନ ପରେ ପୁରୋହିତଙ୍କ ଝିଅ ସଙ୍ଗେ ମାଧିଆର ବିବାହ ହୋଇଗଲା । ମାଧିଆ ସୁନାମୁଦି, ପାଟଖଦି ପିନ୍ଧି ଘିଅ ଶାକର ଖାଇ ମହାମଉଜରେ ରହିଲା ।

ଏହିପରି କେତେକାଳ ଯିବା ପରେ ମାଧିଆ ଗାଁ'ର ଜଣେ ତନ୍ତୀ ସେ ଗାଁ'କୁ ଲୁଗା ବିକି ଆସିଲା । ସେ ଦେଖେ ତ ମାଧିଆଟା ବ୍ରାହ୍ମଣ ପାଲଟି ବେଶ୍ ଖୁସିରେ ଅଛି । ସେ ତାକୁ ଡାକି ପଚାରିଲା – କିରେ, ତୁ ଏଠାରେ କିପରି ଅଛୁ ?

ମାଧିଆ ଦେଖିଲା ଯେ ଯେ ଚଣ୍ଡାଳ ଯେବେ ମୋତେ ଏଠାରେ ତନ୍ତୀ ବୋଲି ଚିହ୍ନାଇଦବ, ତେବେ ମୋ କଥା ସରିଲା । ତେଣୁ ସେ ତାକୁ ଏକାନ୍ତ ଜାଗାକୁ ଡାକିନେଇ ଟଙ୍କେ ଦି'ଟଙ୍କା ଦେଇ ବୁଝାଇ ସୁଝାଇ ଛାଡ଼ିଦେଲା । ସେ ଲୁଗାବିକା ବେପାରୀ ଗାଁ'ରୁ ଯାଇ ଜାତିଭାଇମାନଙ୍କୁ ମାଧିଆର ସବୁ ହାଲ ହଇକତ କହିଲା । ସେ ଗାଁ' ଲୋକେ ଜଣ ଜଣ ହୋଇ ମାଧିଆକୁ ଦେଖିବାକୁ ଆସିଲେ । ମାଧିଆ ସେହିପରି ଚିହ୍ନାପଡ଼ିଯିବା ଭୟରେ କାହାକୁ ଟଙ୍କେ, କାହାକୁ ଦି'ଟଙ୍କା ଦେଇ ବିଦାକଲା । ଗାଁ'ବାଲା ଏହିପରି ରୋଜ୍ ଆସିଲେ । ମାଧିଆ ରୋଜ୍ ରୋଜ୍ କାହାକୁ ଅବା କେତେ ଦବ ? ତହୁଁ ସେ ଭାଳେଣିରେ ପଡ଼ିଲା । ମାଧିଆ ଦେଖିଲା ଯେ ଏକଥା ଆଉ ଛପିବ ନାହିଁ । ପୁରୋହିତ ଯେବେ ମୋତେ ତନ୍ତୀ ବୋଲି ଜାଣିବେ, ତେବେ ମୋର ଅବସ୍ଥା କ'ଣ ହେବ ? ତେବେ ଏଥିକି ଉପାୟ କ'ଣ ? ସେ ଦେଖିଲା ଯେ ଶଶୁର ମୋ କଥା ଆଉ କାହାଠାରୁ ଜାଣିବା ଅପେକ୍ଷା ମୁଁ କହିଦେବା ଭଲ । ଏହା ସ୍ଥିରକରି ଦିନେ ସନ୍ଧ୍ୟାବେଳେ ଶଶୁରଙ୍କ ଆଗରେ ମୁହଁ ଶୁଖାଇ ଠିଆ ହେଲା । ଶଶୁରେ ଜୋଇଁକି ମୁହଁ ଶୁଖାଇବାର

ଦେଖି କାରଣ ପଚାରିଲେ । ଜୋଇଁ ଭୟରେ କିଛି କହିପାରୁ ନ ଥାଏ । ଶଶୁର ବହୁତ ପଚାରିବାରେ ପଛକୁ କାନ୍ଦି ପକାଇଲା । ଶଶୁର କହିଲେ କିଛି ଭୟ ନାହିଁ, କ'ଣ ହୋଇଛି କହ । ଜୋଇଁ କହିଲା ଆପଣ ଯେବେ ନ ରାଗିବେ ତେବେ କହିବି । ଶଶୁର କହିଲେ – କେବେ ନୁହେଁ, ମୁଁ ରାଗିବି ନାହିଁ, କହ ।

ମାଧିଆ କହିବ କହିବ ବୋଲି ହେଲା; ମାତ୍ର କଥାରେ କହିପାରିଲା ନାହିଁ । ପଛକୁ ତନ୍ତୀ ଦୁଇ ହାତରେ କଣ୍ଢା ଧରି ଯେପରି ତନ୍ତ ଦେହରେ ଛାଡ଼ନ୍ତି, ମାଧିଆ ଦୁଇହାତ ମୁଠା କରି ସେହିପରି କଣ୍ଢା ଛାଡ଼ିବାର ଅଭିନୟ କରି କହିଲା – ଆମେ ଏ ଜାତି ।

ଶଶୁରେ ବୁଝିଲେ – ଜୋଇଁଟି ଅସଲ ତନ୍ତୀ । ବ୍ରାହ୍ମଣ ବେଶରେ ଭଣ୍ଡିକରି ମୋର ଜୋଇଁ ହୋଇସାରିଛି । ଏତେବେଳେ ଯାକୁତ ଆଉ ଘରୁ କାଢ଼ିହେବ ନାହିଁ । ଝିଅକୁ ଅନ୍ୟ ବର ମଧ ମଙ୍ଗିବେ ନାହିଁ । ପୁଣି ଜାଣିଲେ ବ୍ରାହ୍ମଣ ଜାତିରେ ମୁଁ ପତିତ ହେବି । ରଜାଘର ପୁରୋହିତିଟି ମଧ ଯିବ । ତେଣୁ ନ ରାଗି କହିଲେ – ହଉ କ'ଣ ହେଲା ? ଏଥିକି ଏତେ ଭୟ କାହିଁକି ? ଆମେ ତ ତୁମକୁ ବଳକା । ଆମେ କଅଣ, ଶୁଣିବ ? ଏହା କହି ଶଶୁରେ ବାଁ ହାତ ପାପୁଲିରେ ଡାହାଣ ହାତ ପାପୁଲିକି ଭଣ୍ଡାରି ଶିଳରେ ଖୁର ଶିଳେଇଲା ପରି କରି କହିଲେ ଆମେ ତ ଇମିତି ଇମିତି, ତୁମେ ସିମିତି ସିମିତି ହେଲେ କ'ଣ ହେଲା ? ଜୋଇଁ ଈଶ୍ୱରଙ୍କୁ ଭଣ୍ଡାରି ବୋଲି ବୁଝିବାରେ ମନରୁ ଦକା ଛାଡ଼ି ଖାଇପିଇ ରହିଲା ।

ଶଶୁରେ ଦେଖିଲେ ଯେ ଆମେ ଜାତିରେ ଭଣ୍ଡାରି ହେଲେ ସୁଦ୍ଧା ଅନେକ ଦିନ ହେଲା ରଜାଘର ପୁରୋହିତି କରି ଆସିଲୁଣି । କେହି କେବେ ପଦେ କହିନାହିଁ । କେହି ଆମକୁ ଭଣ୍ଡାରି ବୋଲି ଜାଣିନାହାନ୍ତି । ସମସ୍ତେ ବ୍ରାହ୍ମଣ ବୋଲି ଜାଣିଛନ୍ତି; କିନ୍ତୁ ପାଖଲୋକ ଯେବେ ଜୋଇଁକି ତନ୍ତୀ ବୋଲି ଚିହ୍ନାଇ ଦିଅନ୍ତି; ତେବେ ଆଉ ରକ୍ଷା ନାହିଁ । ତେଣୁ ରାଜାଙ୍କୁ ଆପେ ଆପେ କହିଦବା ଭଲ । ଏହା ବିଚାରି ପୁରୋହିତେ ଦିନେ ରାଜାଙ୍କ ଭଲ ସମୟ ଦେଖି ମୁହଁ ଶୁଖାଇ ଛାମୁରେ ଠିଆହେଲେ । ରଜା ପଚାରିଲେ – କିହୋ ପୁରୋହିତେ । ମୁହଁ ଶୁଖିଛି କାହିଁକି ? ପୁରୋହିତେ କହିଲେ – ଆଜ୍ଞା, ଛାମୁ

ଅଭୟ ଦେଲେ କିଛି ଜଣାନ୍ତି । ରାଜା ପୁରୋହିତଙ୍କୁ ଭଲ ପାଆନ୍ତି । ତେଣୁ କହିଲେ – କିଛି ଭୟନାହିଁ, ଆମ୍ଭେ ଅଭୟ ଦେଲୁ; କଥା କଅଣ କୁହ ।

ପୁରୋହିତେ ଘଟଣାଟି କଥାରେ କହି ନ ପାରି ଜୋଇଁ ଯେପରି ହାତରେ ଅଭିନୟ କରି ନିଜକୁ ତନ୍ତୀ ବୋଲି ଚିହ୍ନାଇ ଦେଇଥିଲେ, ପୁରୋହିତେ ସେହିପରି ତନ୍ତୀର କଣ୍ଡା ଫିଙ୍ଗିବା ଅଭିନୟ କରି କହିଲେ – ଆଜ୍ଞା, ମୋ ଜୋଇଁଟି ଜାତିରେ ଇମିତି ଇମିତି । ଆଜ୍ଞା, ଯା ତ ମତେ ଆଗଠୁଁ ଜଣା ନ ଥିଲା । ପରେ ଜାଣିଲା ବେଳକୁ ଜୋଇଁ ତ ହୋଇସାରିଲାଣି । ଆଉ ଉପାୟ କଅଣ ? ଜୋଇଁ ଏହା ଜାଣି ମୁହଁ ଶୁଖାଇଲେ । ତାଙ୍କ ମୁହଁଶୁଖା ମୁଁ ସହି ନ ପାରି ମୋ କଥା ମୁଁ କହିଲି । ମୋ କଥା ମଧ୍ୟ ଛାମୁ ଜାଣନ୍ତି ନାହିଁ । ଜାଣିଲେ ମୋ ଦଶା କ'ଣ ହବ କେଜାଣି ? ରଜା କହିଲେ – କହୁ ନାହଁ, ଆମେ ପରା ଅଭୟ ଦେଇଛୁ ? ପୁରୋହିତେ ସେହିପରି ହାତରେ ଖୁର ଶିଳେଇବା ଅଭିନୟ କରି କହିଲେ – ଆଜ୍ଞା ପ୍ରକୃତରେ ଆମେ ଇମିତି ଇମିତି ।

ରଜା ଏହା ଶୁଣି କହିଲେ – ହଉ ହେଲା । ଏଥିପାଇଁ ଏତେ ଭୟ କାହିଁକି ? ଆମେ କ'ଣ କାହାକୁ ଉଣା କି ? ଆମେ କ'ଣ ଜାଣ ? ଏହା କହି ହାଡ଼ି ଯେପରି ନାଗରା ବଜାନ୍ତି, ସେହିପରି ଦୁଇହାତ ବିଶିଆଙ୍ଗୁଠି ସାହାଯ୍ୟରେ ନାଗରାବଜା ଅଭିନୟ କରି କହିଲେ – ଆମେ ତ ଇମିତି ଇମିତି । ଜୋଇଁ ସିମିତି ସିମିତି, ତୁମେ ଇମିତି ଇମିତି ହେଲେ ଭାସିଗଲା କ'ଣ ? ଏଥିପାଇଁ ଏତେ ଭୟ ? ଏବେ ଭୟ ଗଲା ତ ?

ପୁରୋହିତେ ଯହୁଁ ଜାଣିଲେ ରଜା କ୍ଷତ୍ରିୟ ନୁହନ୍ତି, ନାଗରାବଜା ହାଡ଼ି, ତହୁଁ ତାଙ୍କର ଭୟ ଭାଙ୍ଗିଗଲା ।

ଏଥିକି ହାଡ଼ି ରଜାକୁ ଭଣ୍ଡାରି ପୁରୋହିତ, ତା' ପଛକୁ ଜୋଇଁ ତନ୍ତୀ ଏ ତିନିହେଁ ରାଜୁଡ଼ା ଚଳାଇଲେ ।



# ରଜାଙ୍କ ଘୋଡ଼ାର ଦୁଧଖିଆ

ଗୋଟିଏ ରାଜ୍ୟରେ ଜଣେ ରାଜା ଥିଲେ । ସେ ବଡ଼ ଘୋଡ଼ା ସଉକା । ତାଙ୍କର ବହୁତଗୁଡ଼ିଏ ଘୋଡ଼ା ଥାଆନ୍ତି । ସେଥିରୁ ସେ ପାଞ୍ଚୋଟି ଘୋଡ଼ାରେ ବସନ୍ତି । ରାଜା ଯେଉଁ ଘୋଡ଼ାରେ ବସନ୍ତି, ତାହାକୁ ପାଟଘୋଡ଼ା କହନ୍ତି । ରାଜା ଦିନେ ମନ୍ତ୍ରୀକି କହିଲେ – କାଲିଠାରୁ ଆମ ପାଟଘୋଡ଼ା ସବୁ ଖାଲି ଦୁଧ ଖାଇବେ । ତୁମେ ସଇସକୁ ହୁକୁମ ଦବ – ଦୁଧରେ ଯେପରି ପାଣି ନ ମିଶେ । ମନ୍ତ୍ରୀ 'ଯେ ଆଜ୍ଞା', କହି ସଇସକୁ ସବୁ କଥା ବୁଝାଇଦେଲେ । ବରାଦ ଅନୁସାରେ ତହିଁ ଆରଦିନ ଗଉଡ଼ସବୁ ଭାର ଭାର ଦୁଧ ସଇସ ପାଖରେ ହାଜର କଲେ । ଗଉଡ଼ ତ କେବେ କାହାକୁ ନିରୁତା ଦୁଧ ଦିଅନ୍ତି ନାହିଁ । ତେଣୁ ସେ ଯେତେ ପାଣି ମିଶାଇବାର ମିଶାଇଥିଲେ । ସଇସ ଦେଖିଲା ଯେ ଘୋଡ଼ା କିପରି ଦୁଧ ଖାଇଲେ, ଏହା କେହି ତ ଦେଖିବାକୁ ନାହିଁ । ତେବେ ମୋ ଭାଗ ମୁଁ କାହିଁକି ଛାଡ଼ିବି ? ଏହା ବିଚାରି ଯେତେ ସେର ଦୁଧ ଆସିଥିଲା, ସେତେ ପା' କାଢ଼ିନେଇ, ସେତିକି ପାଣି ମିଶାଇଲା । ଦିନାକେତେ ଗଉଡ଼େ ସେହିପରି ଆଣିଲେ, ସଇସ ମଧ୍ୟ ସେହିପରି ପାଣି ମିଶାଇ ଘୋଡ଼ାଙ୍କୁ ଖୁଆଇଲା । ସେତେବେଳେ ସଇସ ଘରେ ଦୁଧ, ଦହି, ଛେନା ହାଉଯାଉ ହେଲା । ରାଜା ଭାବିଚିନ୍ତି – ଘୋଡ଼ାସବୁ ଖାଣ୍ଟି ଦୁଧ ଖାଉଛନ୍ତି, ଅଳ୍ପଦିନେ ନିଶ୍ଚେ ସୁନ୍ଦର ଚିକ୍‌କଣ ହୋଇଯିବେ । କେତେଦିନ ଗଲା ପରେ ରାଜା ଘୋଡ଼ା ଦେଖିବାକୁ ଗଲେ । ଦେଖିଲେ – ଘୋଡ଼ାଙ୍କର ରୂପ କିଛି ବଦଳିନାହିଁ । ଯା ଦେଖି

ତାଙ୍କର ଆଶଙ୍କା ହେଲା – ଘୋଡ଼ା ତେବେ ଖାଣ୍ଟି ଦୁଧ ଖାଉନାହାନ୍ତି । ତେଣୁ ସଇସ କାମ ଦେଖିବାକୁ ଜଣେ ସର୍ଦାର ନିଯୁକ୍ତ କଲେ । ଏଣିକି ଦୁଧ ପହଞ୍ଚିବା ପରେ ସଇସ ନିଜର ଯାହା କରିବାର କଥା, ତାହା କରିସାରି ଘୋଡ଼ାଙ୍କ ଦୁଧଖିଆ ଦେଖିବାକୁ ସର୍ଦାରକୁ ଡାକେ । ସର୍ଦାର ଏତେଗୁଡ଼େ ଦୁଧ ଦେଖି ଲୋଭ ସମ୍ଭାଳି ନ ପାରି, ତା' ପାଇଁ ପାଏ ପାଏ କାଢ଼ିବାକୁ ସଇସକୁ କହିଲା । ସଇସ ସର୍ଦାର ପାଇଁ ପାଏ ପାଏ ଦୁଧ କାଢ଼ି ସେଥିରେ ସେତିକି ପାଣି ମିଶାଇଲା । ଏବେ ଗଉଡ଼ଙ୍କ ପାଣିମିଶା, ସଇସର ପାଣିମିଶା, ତା' ଉପରେ ସର୍ଦାରର ପାଣିମିଶାରେ ଦୁଧର ଯାହା ଅବସ୍ଥା ହେଲା । ଏହିପରି ଘୋଡ଼ାମାନେ ଦୁଧ ଦିନାକେତେ ଖାଇଲେ । ରାଜା ତ ସଇସ କାମ ଦେଖିବାକୁ ସର୍ଦାର ନିଯୁକ୍ତ କରିଚନ୍ତି । ତେଣୁ ଭାବିଚିନ୍ତି – ଏଥର ଘୋଡ଼ା ସବୁ ନିଶ୍ଚେ ଖାଣ୍ଟି ଦୁଧ ଖାଉଥିବେ; କିନ୍ତୁ ସାରୁ ଭିତରେ ମାରୁଅଛି, ରାଜା କାହିଁକି ଏକଥା ଜାଣିବେ । ଦିନେ ଯାଇ ଦେଖନ୍ତି ତ ଘୋଡ଼ାସବୁ ଅଧିକ ଦୁର୍ବଳ । ରାଜା ଭାବିଲେ – ସର୍ଦାର ତେବେ କିଛି ଗୋଳମାଳ କରୁଛି । ଏହା ଭାବି ତା' କାମ ଦେଖିବାକୁ ଜଣେ ବିଶୋଇଙ୍କୁ ନିଯୁକ୍ତ କଲେ । ବିଶୋଇ ନିଯୁକ୍ତ ହେବାପରେ ସଇସ ନିଜ ପାଉଣା କାଢ଼ି ସର୍ଦାରକୁ, ସର୍ଦାର ନିଜ ପାଉଣା କାଢ଼ି ବିଶୋଇକି ଡାକେ । ବିଶୋଇ ଏତେ ଗୁଡ଼େ ଦୁଧ ଦେଖି ନିଜ ପାଇଁ ପାଏ ପାଏ କାଢ଼ିବାକୁ ବରାଦ କଲା । ସେହିପରି ପାଏ ପାଏ ଦୁଧ କଢ଼ାଯାଇ ପୁଣି ସେତିକି ପାଣି ମିଶାଗଲା । ଦିନାକେତେ ଯିବାପରେ ରାଜା ପୁଣି ଘୋଡ଼ାଙ୍କୁ ଦେଖିବାକୁ ବିଜେ କଲେ । ଦେଖନ୍ତି ତ ଘୋଡ଼ା ଦୁର୍ବଳ ହୋଇ କଣ୍ଟା ରହିଲାଣି । ସେଥିରେ ସେ ବିରକ୍ତ ହୋଇ ସମସ୍ତଙ୍କ କାମ ଦେଖିବାକୁ ଜଣେ ହାକିମ ନିଯୁକ୍ତ କଲେ । ଏହା ସମସ୍ତେ ଜାଣିଲେ; କିନ୍ତୁ ସମସ୍ତଙ୍କ ଦୁଧଖିଆ ଅଭ୍ୟାସ ହୋଇଛି । କାହାରି ଭାଗ କେହି ଛାଡୁନାହାନ୍ତି । ସମସ୍ତଙ୍କ ପାଉଣା ଗଲା ପରେ, ସେ କ'ଣ ଆଉ ଦୁଧ ହୋଇ ରହୁଛି ? ସେ କେବଳ ପାଣି, ଦେଖିବାକୁ ଧଳା ମାତ୍ର । ଦିନେ ହାକିମ ଦୁଧ ତନଖି କରିବାକୁ ଆସିଲେ । ଆସି ଦେଖନ୍ତି ତ ଦୁଧରେ ମେଞ୍ଚା ମେଞ୍ଚା ଧୋଇଆ ଚିଙ୍ଗୁଡ଼ି ଭାସୁଛନ୍ତି । ଏହା ଦେଖି ସେ ଆଶ୍ଚର୍ଯ୍ୟ

ହୋଇ ସଇସ, ସର୍ଦ୍ଦାର, ବିଶୋଇଙ୍କୁ ଜଣ ଜଣ କରି ଦୁଧକୁ ଚିଙ୍ଗୁଡ଼ି କିପରି ଆସିଲା ବୋଲି ପଚାରିଲେ । ସମସ୍ତେ ତ ଚୋର, କହିବେ କ'ଣ ? ଖାଲି ବଲ ବଲ କରି ଚାହିଁଲେ । ହାକିମ ବହୁତ ଧରା ଆଗୁଳା କରିବାରେ ସେ ଯାକୁ, ଯେ ତାକୁ ଦୋଷ ଦେବାରେ ଲାଗିଲେ । ସବୁ କଥା ଧରାପଡ଼ିଲା । ହାକିମ ଜାଣିଲେ କେବଳ ପାଣି ମିଶାଇବାରେ ପାଣିରେ ଏସବୁ ଚିଙ୍ଗୁଡ଼ି ଆସିଛି । ନ ହେଲେ ଦୁଧକୁ ଚିଙ୍ଗୁଡ଼ି କୁଆଡୁ ଆସନ୍ତା ? ଏକଥା ରାଜାଙ୍କ କାନକୁ ଗଲା । ରାଜା ଗୋଟି ଗୋଟି କରି ସେ ସମସ୍ତଙ୍କୁ ରାଜ୍ୟରୁ ତଡ଼ିଦେଲେ । ଏତେ ଖୋଳତାଡ଼ ହେବାରେ ସିନା କଥା ଧରାପଡ଼ିଲା । ନ ହେଲେ ତ ଘୋଡ଼ା ଚିଙ୍ଗୁଡ଼ି ଖାଉଥା'ନ୍ତେ । ରାଜା ଭଲ ହେଲେ କ'ଣ ହେବ ? ବେଭାରୀ ଭଲ ନ ହେଲେ ରାଜ୍ୟ ଭାଣ୍ଡ୍ ।



# ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ

ରଜାଙ୍କୁ ଯେଉଁ ବାରିକ କ୍ଷିଅର କରେ, ତା' ଉପରେ ଭଦ୍ରଲୋକ ଚର୍ଚ୍ଚା ଭାର ଥାଏ । ଏଥିଲାଗି ତାକୁ ଚର୍ଚ୍ଚା ବେହେରା କହନ୍ତି । ଚର୍ଚ୍ଚା ବେହେରା ପ୍ରତି କ୍ଷିଅର ପାଳିରେ ହାଜର ହୋଇ ରଜାଙ୍କୁ କ୍ଷିଅର କରିଦେଇ ଯାଏ । ଥରେ ନଖ କାଟୁ କାଟୁ ଦୈବାତ୍ ରଜାଙ୍କ ଆଙ୍ଗୁଠିରୁ ଟିକିଏ କାଟି ହୋଇଗଲା । ଗୁଡ଼ାଏ ରକ୍ତ ବୋହିଗଲା । ରଜା ଇଲୋ, ମାଲୋ ହେଲେ । ଡାକ୍ତର ଆସି ମଲମ ଦେଇ ପଟି ବାନ୍ଧିଦେଇ ଗଲେ । ଲୋକେ ଏ ଖବର ଜାଣି ରଜାଙ୍କ ମନ ନବା ପାଇଁ କିଏ କହିଲା – ଆହା, ଯେ କ'ଣ ହେଲା ? ଶ୍ରୀଅଙ୍ଗରେ ଯେ କି ଦୁଃଖ ହେଲା ? କିଏ କହିଲା – ବାରିକଟା କେଡ଼େ ନିମକହାରାମ, ଯା ସେ କିପରି କଲା ? କିଏ କହିଲା – ଶ୍ରୀଅଙ୍ଗରୁ ଗୁଡ଼ାଏ ରକ୍ତ ଯାଇଛି, କିଛି ଦାନପୁଣ୍ୟ କରି ଦିଆଯାଉ । ଏହିପରି କିଏ କେତେ ମନନବା କଥା କହିଲେ ।

ସେ ରଜାଙ୍କର ଜଣେ ବୁଢ଼ା ମନ୍ତ୍ରୀ ଥିଲେ । ସେ ଅତ୍ୟନ୍ତ ବୁଦ୍ଧିମାନ ଏବଂ ଈଶ୍ୱରପରାୟଣ ଲୋକ । ରଜାଙ୍କ ଆଙ୍ଗୁଠି କଟିଯିବା କଥା ଶୁଣି ସେ କହିଲେ – ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ । ଏକଥା ଚାରିଆଡ଼େ ଖେଳିଗଲା । ରଜାଙ୍କ କାନକୁ ମଧ୍ୟ ଗଲା । ରଜାଙ୍କ ପାଖ ଲୋକେ ରଜାଙ୍କୁ ଜଣାଇ ଶୁଣାଇ କହିଲେ – ମନ୍ତ୍ରୀଙ୍କର କି ସାହସ । ଶ୍ରୀଅଙ୍ଗରେ ହତିଆର ଲାଗିଯିବା ଯେ ଶୁଣିଲା ସେ ବିଥେଇ ହେଲା । ମନ୍ତ୍ରୀ କହୁଛନ୍ତି କ'ଣ ନା, ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ଆଉ ହବ ନାହିଁ, ହବ ନାହିଁ । ଏହା କ'ଣ ନିମକସଚ୍ଚା ଲୋକ କହେ ? ଏହିପରି ଆହୁତିଏ ଆହୁତିଏ ପଡ଼ିବାରେ ମନ୍ତ୍ରୀ ଉପରେ ରଜାଙ୍କ ମନ ରାଗିଉଠିଲା ।

ଅଳସ ସାଧିବା ପାଇଁ ଦିନେ ରଜା ମନ୍ତ୍ରୀଙ୍କୁ ସାଙ୍ଗରେ ନେଇ ଶିକାର କରିବାକୁ ଗୋଟେ ନିବିଡ଼ ଜଙ୍ଗଲକୁ ଗଲେ । ସାଙ୍ଗରେ ଆଉ ଲୋକବାକ

କେହି ନ ଥିଲେ । ଖାଲି ରଜା ମନ୍ତ୍ରୀ ଦୁଇ ଜଣ । ଯେତେବେଳେ ନିବିଡ଼ ଜଙ୍ଗଲରେ ପହଞ୍ଚିଲେ, ସେତେବେଳେ ରଜା ଖାଲି ଚାରିଆଡ଼କୁ ଚାହୁଁଥା'ନ୍ତି ଖାଲଖମା ପାଇଲେ ମନ୍ତ୍ରୀକି ପେଲିଦେବାକୁ । ଦେଖୁ ଦେଖୁ ଗୋଟେ ପର୍ବତ ଧୋଡ଼ା ପାଇଲେ । ସେ ଧୋଡ଼ା ଅତି ଗହୀରିଆ; ତା' ଭିତରେ କିଟିକିଟି ଅନ୍ଧାର । ରଜା ସେଇ ଧୋଡ଼ାକୁ ମନ୍ତ୍ରୀକି ପେଲିଦେଇ, ଏକୁଟିଆ ଫେରିଲେ ।

ସେ ଜଙ୍ଗଲରେ କେଉଁ କାଳରୁ ଗୁଡ଼ିଏ କନ୍ଧ ଥା'ନ୍ତି । ସେଗୁଡ଼ାକ ଅତି ଅସଭ୍ୟ । କେବେହେଲେ ସହର, ବଜାର ଦେଖିନାହାନ୍ତି; ପତ୍ର ପିନ୍ଧି, ବଣର ଫଳମୂଳ ଖାଇ ବଞ୍ଚନ୍ତି । କାଠ ଖୁଣ୍ଟ ପୋତି ତାକୁ ଦେବତା ବିଶ୍ୱାସରେ ପୂଜା କରନ୍ତି । ପ୍ରତିବର୍ଷ ସେ ଦେବତାକୁ ନରବଳି ଦିଅନ୍ତି । ବଳି ପାଇଁ ତାଙ୍କର ମଣିଷ ଖୋଜା ଲାଗିଥାଏ । ରଜା ଫେରୁ ଫେରୁ ଦୈବାତ୍ ସେ କନ୍ଧଙ୍କ ହାବୁଡ଼େ ପଡ଼ିଲେ । ସେମାନେ କେବେ ରଜାଙ୍କୁ ଦେଖିନାହାନ୍ତି । ରଜା ବୋଲି କାହିଁକି ଚିହ୍ନିବେ ? ତାଙ୍କର ସୁନ୍ଦର ରୂପ ଦେଖି ସମସ୍ତେ ବେଢ଼ିଗଲେ । ରଜାଙ୍କର ମହା ଭୟ ହେଲା । ସେ କହିଲେ – ଆରେ, ମୁଁ ତୁମର ରଜା, ମତେ ଛାଡ଼ିଦିଅ । ସେମାନେ କିଆଁ ଟିକିଏ ମାନନ୍ତେ ? ଓଲଟି କହିଲେ – ତୁ କିଆଁ ଆମର ରଜା ହବୁ ? ତତେ କେବେ ଛାଡ଼ିବୁ ନାହିଁ । ଏହିପରି କହି ରଜାକୁ କାଠଖୁଣ୍ଟ ଦେବତା ପାଖକୁ ନେଲେ । ଦେବତାକୁ ଝୁଣା ଧୂପ ଦେଇ ରଜା ବେକରେ ଫୁଲମାଳ ପକାଇ ଅର୍ଗଳିରେ ତା' ମୁଣ୍ଡ ପୂରେଇଲେ । କଟେଇତ ଦାଡୁଆ ଫାର୍ସା ଧରି ହାଣିବାକୁ ଠିଆ ହେଲା । ଆଉ ଜଣେ କନ୍ଧ ରଜାଙ୍କ ଦୁଇ ହାତ ପଛ ଆଡ଼କୁ ଟାଣି ଧଇଲା ବେଳକୁ ଦେଖାଗଲା – ରଜାଙ୍କର ଗୋଟେ ଆଙ୍ଗୁଠି ଖଣ୍ଡିଆ । ଖୁଣଥିଲେ ବଳି ଦିଆଯାଏ ନାହିଁ । ସେପରି ବଳି ଦେଲେ ଦେବତା ରାଗନ୍ତି । କନ୍ଧମାନେ ଆଉ ବଳି ଦେବେ କଅଣ, କହିଲେ ଯାଆରେ – ପୁତା ଯା, ତୋ କପାଳ ସଳଖ । ତୋର ଖଣ୍ଡିଆ ଆଙ୍ଗୁଠି ତତେ ରଖିଲା, ନ ହେଲେ ତୋର ରକତ ଦେବତା ଏବେ ଖାଇଥା'ନ୍ତା । ଏହା କହି ରଜାକୁ ଅର୍ଗଳିରୁ ଫିଟାଇ ଛାଡ଼ିଦେଲେ । ରଜା ମୃତ୍ୟୁମୁଖରୁ ରକ୍ଷାପାଇ ଘରକୁ ବାହାରିଲେ ।

ରଜା ଯାଉ ଯାଉ ବାଟରେ ବିଚାରିଲେ – ମନ୍ତ୍ରୀ ଯାହା କହିଥିଲା ସତ । ପ୍ରକୃତରେ ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ଭଣ୍ଡାରି ଯେବେ ମୋ ଆଙ୍ଗୁଠି କାଟିଦେଇ ନ ଥା'ନ୍ତା, କନ୍ଧଗୁଡ଼ାକ ମତେ ନ ମାରି ଛାଡ଼ିଥା'ନ୍ତେ କି ? ସାବସ୍ ମନ୍ତ୍ରୀ । ଏଭଳି ମନ୍ତ୍ରୀକୁ ଛାଡ଼ିଦେଲେ ମଙ୍ଗଳ ନାହିଁ । ଯିମିତି ହଉ ତାକୁ ଆଣିବାକୁ ହବ, ଏହା ବିଚାରି ରଜା ମନ୍ତ୍ରୀ ପଡ଼ିଥିବା ସ୍ଥାନକୁ ଗଲେ । ମନ୍ତ୍ରୀ ମନ୍ତ୍ରୀ ବୋଲି ବହୁତ ଡାକ ପକାଇବାରେ ମନ୍ତ୍ରୀ ଟୋପ ଭିତରୁ ଜବାବ ଦେଲେ । ରଜା ତା'ପରେ ଟୋପ ଭିତରକୁ ଗୋଟିଏ ଲଇ ପକାଇଲେ । ମନ୍ତ୍ରୀ ସେ ଲଇ ଧରି ଉପରକୁ ଆସିଲେ । ରଜା ମନ୍ତ୍ରୀକୁ ପାଇ ବଡ଼ ଖୁସି ହେଲେ । କହିଲେ – ମନ୍ତ୍ରୀ । ତୁମେ ଯାହା କହିଥିଲ – ଈଶ୍ୱର ଯାହା କରନ୍ତି, ତାହା ମଙ୍ଗଳ ପାଇଁ, ଏକଥା ସତ କଥା । ଇଲାଗେ କନ୍ଧମାନେ ମତେ ବଳି ଦବାକୁ ନେଇଥିଲେ । ବଳି ଦେବା ବେଳକୁ ମୋର ଏ ଖୁଣ ଆଙ୍ଗୁଠିଟି ଦେଖିବାରୁ ମତେ ଛାଡ଼ିଦେଲେ । ନ ହେଲେ ମତେ ନ ହାଣି ଛାଡ଼ି ନ ଥା'ନ୍ତେ । ତୁମେ ମୋ ଆଙ୍ଗୁଠି ଖୁଣ ଶୁଣି କହିଥିଲ – ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ । ମୁଁ ଏହା ଶୁଣି ତୁମକୁ ଶତ୍ରୁ ବିଚାରି ଜଙ୍ଗଲକୁ ଆଣି ଖାଲକୁ ପେଲିଦେଲି । ମୋର ଅପରାଧ ହୋଇଛି, କ୍ଷମା ଦିଅ ।

ମନ୍ତ୍ରୀ କହିଲେ – ଛାମୁ କିଛି ଦୋଷ କରି ନାହାନ୍ତି, ବରଂ ମୋର ଉପକାର କରିଛନ୍ତି । ମତେ ଆପଣ ଖାଲରେ ପେଲି ଦେଇଥିଲେ ବୋଲି ମୁଁ ରକ୍ଷା ପାଇଗଲି । ନ ହେଲେ ମତେ ନିଖୁଣ ଦେଖି କନ୍ଧମାନେ ନିଶ୍ଚେ ବଳି ଦେଇଥା'ନ୍ତେ । ଛାମୁ ଆଉ ଦୋଷ କଲେ କିପରି ? ସେଥିପାଇଁ କହିଛି ପରା – ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ ।

ରଜା କହିଲେ – ମନ୍ତ୍ରୀ । ତୁମେ ଯାହା କହିଲ, ତାହା ମଧ୍ୟ ସତ । କନ୍ଧ ପ୍ରକୃତରେ ତୁମକୁ ପାଇଥିଲେ ଛାଡ଼ି ନ ଥା'ନ୍ତେ । ପ୍ରକୃତରେ ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ । ହଉ ଚାଲ, ଘରକୁ ଫେରିଯିବା । ରଜା ମନ୍ତ୍ରୀ ଘରକୁ ଗଲେ, ସେହିଦିନ ଠାରୁ ରଜା ମନ୍ତ୍ରୀଙ୍କୁ ଗୁରୁ ପରି ମାନି ଚଳିଲେ ।



# ଆଲୋ ମୋ ଗମ୍ୟତାଂ କ'ଣ ହୋଇଯାଉଚି ଲୋ

ଜଣେ ବ୍ରାହ୍ମଣ ପୁଅଟିକୁ ସଂସ୍କୃତ ପଢ଼ିବାକୁ ଗୋଟେ ଗାଁ'ରେ ଜଣେ ପଣ୍ଡିତଙ୍କ ପାଖରେ ରଖାଇଦେଲେ । ପୁଅଟି ଗୁରୁଙ୍କ ପାଖରେ ରହି ପଢ଼ାଶୁଣା କଲା । ସେ ପିଲାଟି ଯିମିତି ଚଗଲା, ସିମିତି ନିର୍ବୁଦ୍ଧିଆ । ଯାହା ପଢ଼ିଲା, କିଛି ମନେ ରହିଲା ନାହିଁ । ପାଞ୍ଚ ବର୍ଷ କାଳ ବାପ ମା'ଙ୍କୁ ଛାଡ଼ି ସେଠାରେ ପଢ଼ିଲା । ହେଲେ କ'ଣ ହବ, କଡ଼ାଟିକର କାମ ହେଲା ନାହିଁ । ଘରୁ ଆସିଲା ବେଳେ ଯାହା ଥିଲା, ପାଞ୍ଚବର୍ଷ ପଢ଼ି ମଧ୍ୟ ସେୟା । ପାଠପଢ଼ା ଯାହା ଇଚ୍ଛା ତାହା ହେଉ, ପିଲାଟା ଘରକୁ ଯିବାକୁ ଉଚ୍ଛନ୍ନ ହେଲା । ଘରକୁ ଯିବାକୁ ଦିନେ ଗୁରୁଙ୍କୁ ମଧ୍ୟ କହିଲା । ଗୁରୁ ମଧ୍ୟ ଏ ପଥର ବୋଝରୁ ରକ୍ଷା ପାଇବାକୁ ବାଟ ଖୋଜୁଥିଲେ । ତେଣୁ ଛାତ୍ର କହିଲା ମାତ୍ରକେ ଯାଅ ବୋଲି ଓଡ଼ିଆରେ ନ କହି ସଂସ୍କୃତରେ କହିଲେ 'ଗମ୍ୟତାଂ' । ଛାତ୍ର ତ ସଂସ୍କୃତ ବୁଝିବାକୁ ରମ୍ଭା । ସେ କାହିଁକି ଗମ୍ୟତାଂର ଅର୍ଥ ଟିକିଏ ବୁଝନ୍ତା ? ଖାଲି ହାତଠାରରୁ ଯିବା କଥା ବୁଝି ଲୁଗାପଟା ବାନ୍ଧି ଘରକୁ ବାହାରିଲା । ଯାଉ ଯାଉ ବାଟରେ ମନେ ପଡ଼ିଲା – ମୁଁ ଆସିଲାବେଳକୁ ଗୁରୁ ଗମ୍ୟତାଂ ବୋଲି କ'ଣ କହିଲେ, ତା'ର ତ ଅର୍ଥ ମୁଁ କିଛି ବୁଝିଲି ନାହିଁ । ପୁଣି ଫେରିଯାଇ ସେତକ ବୁଝିଆସିବା ଦରକାର । ଯୋଗ୍ୟ ଛାତ୍ର ଗମ୍ୟତାଂର ଅର୍ଥ ବୁଝିବାକୁ ସେତକ ବାଟ ଫେରି ଗୁରୁଙ୍କ ପାଖେ ପହଞ୍ଚିଲା । ଗୁରୁ ସେତେବେଳେ ପୂଜାରେ ବସିଥିଲେ । ସେତେବେଳେ ସେ କାହାକୁ କଥା କହନ୍ତି ନାହିଁ । ସେ ଛାତ୍ରକୁ ଫେରି

ଆସିବାର ଦେଖି ମୁହଁରେ ଠାରି ଫେରିବାର କାରଣ ପଚାରିଲେ । ଛାତ୍ର କହିଲା – ଆପଣ ମତେ ବିଦାୟ ଦେଲାବେଳେ ଗମ୍ୟତାଂ ବୋଲି କଅଣ କହିଲେ । ତା'ର ଅର୍ଥ କଅଣ ? ଏୟା ବୁଝିବାକୁ ଫେରିଲି । ଏତେକାଳ ସଂସ୍କୃତ ପଢ଼ି ଛାର୍ ଗମ୍ୟତାଂର ଅର୍ଥ ବୁଝି ନ ପାରିବାର ଜାଣି ଗୁରୁ ମନେ ମନେ ଧିକ୍କାର କରି ନିଜ କପାଳକୁ ଆଙ୍ଗୁଠିରେ ଠୁକି ତୋ' କପାଳରେ ନାହିଁ ବୋଲି ଜଣାଇ ଦେଲେ । ବୁଦ୍ଧିଆ ଛାତ୍ର ସେକଥା ବୁଝିବ କାହିଁକି ? ସେ ବୁଝିଲା – ଗମ୍ୟତାଂର ଅର୍ଥ ମୁଣ୍ଡ । ସେ ଅର୍ଥ ବୁଝି ନିର୍ଦ୍ଧୁମ ଖରାରେ ଗାଁ'କୁ ଗଲା । ଚାଲି ଚାଲି କେତେବେଳ ଉତ୍ତାରୁ ଗାଁ'ରେ ପହଞ୍ଚିଲା । ଏତେକାଳରେ ପୁଅ ଆସିବାରୁ ବାପ ମା' ଭାରି ଖୁସି ହେଲେ । ପୁଅ ପୁଣି ପାଠ ପଢ଼ି କରି ଆସିଛି ବୋଲି ବାପମା'ଙ୍କର ଅଧିକ ଆନନ୍ଦ ।

ପୁଅ ଖାଇବା ପାଇଁ ମା' ତରବର ହୋଇ ରନ୍ଧାବଢ଼ା କରିବାକୁ ଗଲା । ପୁଅ ମସିଣା ଖଣ୍ଡେ ପକାଇ ଗଡ଼ପଡ଼ ହେଲା । ଗୁଡାଏ ବାଟ ଟାଇଁ ଟାଇଁ ଖରାରେ ଚାଲିକରି ଆସିଥିଲା । ସେଇଥିରୁ ଭୟଙ୍କର ମୁଣ୍ଡବ୍ୟଥା ହେଲା । ସେ ତାହା ସମ୍ଭାଳି ନ ପାରି ମା' କୁ ଡାକ ପକାଇଲା । ମା' ତେଣେ ରନ୍ଧାବଢ଼ାରେ ଲାଗିଥା'ନ୍ତି; ଚୁଲି ଛାଡ଼ି ଆସି ପାରୁ ନ ଥା'ନ୍ତି । ପୁଅ ତ ପୁଣି ସଂସ୍କୃତ ପାଠ ପଢ଼ି କରି ଆସିଛନ୍ତି; ବୁଝିଲାବେଳକୁ ସଂସ୍କୃତର 'ସ' ଅକ୍ଷର ଜଣାନାହିଁ । ସେ ତ ଗୁରୁଙ୍କୁ ଗମ୍ୟତାଂର ଅର୍ଥ ପଚାରି ମୁଣ୍ଡ ବୋଲି ବୁଝି ଆସିଚି । ବିଚାରିଲା – ଗମ୍ୟତାଂ ବଥାଉଛି ନ କହି ମୁଣ୍ଡ ବଥାଉଛି କାହିଁକି କହିବି ? ନ ହେଲେ ସଂସ୍କୃତ ପଢ଼ିଛି ବୋଲି ଲୋକେ କେମିତି ଜାଣିବେ ? ଏହା ଭାବି ବିକଳ ହୋଇ ଡାକ ପକାଇଲା – ମାଲୋ । ହେ ମା' । ଆଲୋ ମା' ଗମ୍ୟତାଂ କଅଣ ହୋଇଯାଉଛି ଲୋ, ଚଞ୍ଚଳ ଆ । ମା' କିଛି ବୁଝି ନ ପାରି ତରତର ହୋଇ ଦୌଡ଼ିଆସିଲା । ପୁଅ ମୁଣ୍ଡର ଥାନମୁନ୍ଦୁରାଦି'ଟା ଚିପି ଧରି ମା'କୁ କହିଲା – ଆଲୋ ମା' । ମୋ ଗମ୍ୟତାଂ କ'ଣ ହୋଇଯାଇଛି ଲୋ । ମା' ଆବାକାବା ହୋଇ ଚାହିଁଲା, କିଛି ବୁଝି ପାରିଲା ନାହିଁ । ପଚାରିଲା – ଆରେ ! ଗମ୍ୟତାଂ କଅଣ ? ମା' ବୁଝି ନ ପାରିବାରୁ ପୁଅ ବିରକ୍ତ ହୋଇ କହିଲା – ମାଇପି

ଗୁଡ଼ାକ ତ ପାଠଶାଠ ପଢ଼ିଲ ନାହିଁ, ବୁଝିବ କଅଣ ? ଆଲୋ ! ଦେଖୁନାହୁଁ – ଏ ଶିରା ଦି'ଟା କିମିତି ଧକଧକ ହଉଛି ? ମା' କହିଲା – ଆରେ ମୁଣ୍ଡ ବଥାଉଛି କିରେ । ପୁଅ କହିଲା – ହଁ ସେୟା । ଏବେ ଗମ୍ୟତାଂ କଅଣ, ବୁଝିଲୁ ? ମା କହିଲା – ଆରେ । ଗମ୍ୟତାଂ ବୋଇଲେ ମୁଁ ମୁଣ୍ଡ ବୋଲି କାହିଁକି ଜାଣିବି ? ତୁ ସିନା ପାଠ ଶାଠ ପଢ଼ିଚୁ, ମୁଁ କ'ଣ ପାଠ ପଢ଼ିଛି ? ପୁଅଙ୍କର ଏପରି ପାଠଶାଠ ବାପା, କକା ଗାଁ' ଲୋକ ଜାଣିଲେ । ଯେ ଶୁଣିଲା, ସେ ହସିଲା । ଲୋକେ କହିଲେ – ବାଃ ପୁଅ ଭଲ ପାଠ ପଢ଼ିଲା । ଗାଁ'ଲୋକେ ଗୁଡ଼େ ହସ ବୃଷ୍ଟି କଲେ । ତାହା ଦେଖି ପୁଅ ଲାଜରେ ଆଉ ଘରୁ ବାହାରିଲା ନାହିଁ କି କାହା ସାଙ୍ଗେ କଥାବାର୍ତ୍ତା କଲା ନାହିଁ । ଗମ୍ୟତାଂ ଯୋଗେ ତାହାର ଜୀବନଟା ମାଟି ହୋଇଗଲା ।



# ବୃଦ୍ଧା ବେଶ୍ୟା ତପସ୍ୱିନୀ

ଗୋଟିଏ ଗାଁ'ରେ ଜଣେ ବ୍ରାହ୍ମଣ ଥିଲେ । ସେ ପିଲାଦିନରୁ ବଗୁଲିଆ ହେଲେ, ପାଠଶାଠ କିଛି ପଢ଼ିଲେ ନାହିଁ । ବୟସ ହେଲା, ପୁଣି ଘରର ପୁଅ । ତେଣୁ ପାଞ୍ଚ ସାତ ଜଣଙ୍କ ମଧ୍ୟରେ ବସିବାକୁ ପଡ଼ିଲା । ପାଠୁଆ ଲୋକେ ବସିଲେ ପାଠଶାଠ ଚର୍ଚ୍ଚା ହୁଏ । ସେ ବ୍ରାହ୍ମଣ ଏହିପରି ଗୋଷ୍ଠୀରେ ବହୁତ ଜାଗାରେ ବସିବାରେ ପାଠଶାସ୍ତ୍ର କେତେ ଶୁଣିଲେ । ସଂସ୍କୃତ ପ୍ରତି ଟିକିଏ ଆଦର ହେଲା ସିନା ମୂର୍ଖ ଲୋକେ ବୁଝିବେ କଅଣ ? ତେବେ ଗୋଟେ ଶ୍ଳୋକର ପଦେ ଅଧେ ମନରେ ରହିଯାଏ; କିନ୍ତୁ ତା'ର ଅର୍ଥ କିଛି ଜାଣନ୍ତି ନାହିଁ ।

ବ୍ରାହ୍ମଣଙ୍କର ଷାଠିଏ ବର୍ଷର ବୁଢ଼ୀ ମାଆଟିଏ ଥିଲେ । ସେ ଥରେ ବେମାର ପଡ଼ିଲେ । କେତେ ବନ୍ଧୁ ବାନ୍ଧବ ସଙ୍ଖୋଳି ଆସିଲେ । କିଛି ଦିନ ପରେ ବୁଢ଼ୀ ଭଲ ହୋଇଗଲେ । ବୁଢ଼ୀ ଭଲହେବା ପରେ ଦିନେ ବାଟରେ ସେ ବ୍ରାହ୍ମଣଙ୍କର ଜଣେ ବନ୍ଧୁଙ୍କ ସାଙ୍ଗେ ଦେଖାହେଲା । ବନ୍ଧୁ ବୁଢ଼ୀଙ୍କର ବେମାର ଶୁଣିଥିଲେ; କିନ୍ତୁ ସଙ୍ଖୋଳିବାକୁ ଯାଇପାରି ନ ଥିଲେ । ବୁଢ଼ୀ ଭଲ ହେବା ମଧ୍ୟ ଜାଣି ନ ଥିଲେ । ଆପଣା ଲୋକ ତ, ତେଣୁ ସେ ବ୍ରାହ୍ମଣଙ୍କୁ ପଚାରିଲେ – ମା' ବୁଢ଼ୀ କିମିତି ଅଛନ୍ତି ?

ବ୍ରାହ୍ମଣ ତ ଘରର ପୁଅ । ଭଦ୍ରଲୋକଙ୍କୁ ପୁଣି ସାଧାରଣ ଭାଷାରେ କହିବାକୁ ତାଙ୍କୁ ଭଲ ଲାଗେ ନାହିଁ । ପଦେ ପଦେ ସଂସ୍କୃତ ଶ୍ଳୋକ ପୁଣି ପଇଟେ, ସୁତରାଂ କହିଲେ – ତାଙ୍କ କଥା କଅଣ କହିବି ? ସେ ବର୍ତ୍ତମାନ 'ବୃଦ୍ଧା ବେଶ୍ୟା ତପସ୍ୱିନୀ ।'

ମା ଅତି ବୁଢ଼ୀ ହୋଇଗଲେଣି, ଏହି କଥା ତାଙ୍କର କହିବାର ଥିଲା । ତେଣୁ ଏପରି ଶ୍ଳୋକ ବୋଲିଲେ । ଏହାର ଅର୍ଥ ବେଶ୍ୟାଗୁଡ଼ାକ ବୁଢ଼ୀ ହୋଇଗଲା ପରେ ଜପ ତପ କରି ଦିନ କାଟନ୍ତି, ଏ ଅର୍ଥ ତାଙ୍କୁ ଜଣା ନ ଥିଲା । ଭଦ୍ରଲୋକ ଯୋଗ୍ୟ ପୁତ୍ରଙ୍କର ମାଆଙ୍କ ସମ୍ବନ୍ଧେ ଏପରି ବର୍ଣ୍ଣନା ଶୁଣି କାନରେ ହାତଦେଇ ଚାଲିଗଲେ ।



# ପୁରୋହିତଙ୍କ ଆଣ୍ଠୁଲଛା

ଜଣେ ରଜା ଥିଲେ । ସେ ଭାରି ଘୋଡ଼ାସଉକା । ସେ ଏବେଲା ସେବେଲା ଘୋଡ଼ାରେ ଚଢ଼ି ବୁଲନ୍ତି । ତାଙ୍କର ଜଣେ ପୁରୋହିତ ଥିଲେ । ରଜାଙ୍କର ଘୋଡ଼ା ଚଢ଼ା ଦେଖି ତାଙ୍କର ଘୋଡ଼ା ଚଢ଼ିବାକୁ ଭାରି ମନହେଲା । ମନହେଲା ସିନା, ଘୋଡ଼ାଟିଏ ମିଳୁଛି କାହିଁ ? ଉପାୟ କିଛି ନ ପାଇ ରାଜାଙ୍କଠାରୁ ଘୋଡ଼ାଟିଏ ଖସାଇବାକୁ ଗୋଟିଏ ଫିକର ବାନ୍ଧିଲେ ।

ଦିନେ କଅଣ ହେଲାନା, ପୁରୋହିତ ରଜାଙ୍କ ଛାମୁରେ ପହଞ୍ଚି ଜଣାଇଲେ – ଆଜ୍ଞା, କାଲି ରାତିରେ ସ୍ୱପ୍ନ ଦେଖିଲି – ଶ୍ରୀଛାମୁଙ୍କ ଦଦେଇ ଆରପୁରରେ ପ୍ରତିଦିନ ଇନ୍ଦ୍ରଙ୍କ ସଭାକୁ ଯାଉଛନ୍ତି । ତାଙ୍କ ଦି'ଆଣ୍ଠୁକୁ ବାତ ଧରିବାରେ ବଡ଼ କଷ୍ଟରେ ଯାଉଛନ୍ତି । ମହାରାଜା ମୋତେ ସ୍ୱପ୍ନରେ କହିଛନ୍ତି – ମୋ କଷ୍ଟ ତ ଜାଣିଲ, ଯାଇ ଆସିପାରୁନାହିଁ, ପୁଅ ରଜାଙ୍କୁ କହିବ – ମତେ ବଡ଼ କଳା ଘୋଡ଼ାଟି ଦେଲେ ମୁଁ ଟିକିଏ ଯିବା ଆସିବା କରିବି । ପୁଅ ନିଜେ ତ ମୋତେ ଘୋଡ଼ା ଦେଇ ପାରିବେ ନାହିଁ । ବ୍ରାହ୍ମଣକୁ ଦେଲେ ମୁଁ ପାଇବି । ତୁମେ ତ କୁଳ ପୁରୋହିତ, ତୁମକୁ ଦେଲେ ସବୁଠଉଁ ଭଲ ହେବ । ଯାହା ସ୍ୱପ୍ନରେ ଦେଖିଥିଲି, ତାହା ଜଣାଇଲି । ଛାମୁ ତ ଜାଣନ୍ତି – ପିତୃଲୋକଙ୍କୁ ଯାହା ଦେବ ତାହା ବ୍ରାହ୍ମଣକୁ ଦେଲେ ସେ ପାଆନ୍ତି । ଗୋଟେ ଘୋଡ଼ା ଅବା ଛାମୁକୁ କେତେ ? ଦଦେଇ ପୁଣି ତୁଣ୍ଡ ଫିଟେଇ ମାଗିଛନ୍ତି, ନ ଦେବେ କିପରି ?

ରଜା ଏ ଅପୂର୍ବ ସ୍ୱପ୍ନ କଥା ଶୁଣି କହିଲେ – ହଁ, ଦଦେଇ ତ ତୁମକୁ କହିଥିବେ । ଯା, ଯା, ଆଉ ଏପରି କହନା । ପୁରୋହିତ ଏହା ଶୁଣି ନିରାଶ ହେଲେ; କିନ୍ତୁ ଘୋଡ଼ାଟେ ନ ଦେଲେ ତ ମନ ଥୟ ହେବ ନାହିଁ । ପୁଣି ଭାବି ଭାବି ଠିକଣା କଲେ – ଏ ବାଟେ ସିନା ନ ହେଲା, ରାଜମାତାଙ୍କୁ କହିଲେ କ'ଣ ନ ହେବ ? ଏଠା ଠିକ୍ କରି ରାଜମାତାଙ୍କ ଛାମୁକୁ ଯାଇ ଦେଖାକଲେ ।

ରାଜମାତା ପୁରୋହିତଙ୍କୁ ଦେଖି ପଚାରିଲେ – ପୁରୋହିତେ, କୁଆଡ଼େ ଆସିଲ ? ପୁରୋହିତେ କହିଲେ – ଆଜ୍ଞା, ମୁଁ ଗୋଟେ ବଡ଼ କଥା ଜଣାଇବାକୁ ଆସିଛି । ରଜାଙ୍କୁ ତ ଜଣାଇଲି, ସେ ବୁଝିଲେ ନାହିଁ । ଛାମୁ ପୁରୁଣା ଲୋକ, ପୁଣି ଧର୍ମକର୍ମ ସବୁ ବୁଝନ୍ତି । ଛାମୁ ଅବଶ୍ୟ ବୁଝିବେ ।

ରାଜମାତା କହିଲେ – କଥା କଅଣ କହ । ଆମେ ଅବଶ୍ୟ ବିଚାର କରିବା । ପୁରୋହିତ କହିଲେ – ଆଜ୍ଞା; କଥା କ'ଣ କି – ମୁଁ ସ୍ୱପ୍ନରେ ଦେଖିଛି – ଦଦେଇ ରଜା ସେ ପୁରରେ ଇନ୍ଦ୍ରସଭାକୁ ଯାଉଛନ୍ତି । ସେ ସେମିତି ପୁଣ୍ୟାତ୍ମା ବୋଲି ସିନା ଇନ୍ଦ୍ର ତାଙ୍କୁ ଡାକୁଛନ୍ତି, ନ ଯିବେ କିମିତି ? ଏବେ ଇନ୍ଦ୍ରସଭା ଦଉଡ଼କୁ ଦି'ଆଣ୍ଠୁକୁ ଧରିଛି ବାତ ଯେ ଯିବା ଆସିବାରେ ବଡ଼ କଲବଲ ହେଉଛନ୍ତି । ସେଥିଯୋଗୁଁ ସ୍ୱପ୍ନରେ ମତେ କହିଲେ ପୁଅ ରଜାଙ୍କୁ କହିବ – ତୁମେ ତ କୁଳ ପୁରୋହିତ, ତୁମକୁ ବଡ଼ କଳା ଘୋଡ଼ାଟି ଦେଲେ ମୁଁ ଅବଶ୍ୟ ପାଇବି । ଘୋଡ଼ାଟିଏ ହୋଇଗଲେ ଯିବା ଆସିବାରେ ମୋର ଆଉ କିଛି କଷ୍ଟ ହେବ ନାହିଁ । ଏକଥା ମୁଁ ରଜାଙ୍କ ଛାମୁରେ ଜଣାଇଲି । ରଜା ଏ କଥା ଖାତିର ନ କରି ଉଡ଼ାଇ ଦେଲେ । ଏଇକଥା ଛାମୁରେ ଜଣାଇବାକୁ ଆସିଥିଲି ।

ରାଜମାତା ସବୁ ଶୁଣି କହିଲେ – ୟା ନାଁ, ଗୋଟେ କଥା । ଦଦେଇ ରଜା କଅଣ କରି ଯାଇନାହାଁନ୍ତି ? ସାମାନ୍ୟ ଘୋଡ଼ାଟେ ଦବାକୁ ରଜା ମନା କରୁଛନ୍ତି । ଆଚ୍ଛା, ମୁଁ ପୁଅ ରଜାଙ୍କୁ ଏକଥା କହିବି, ତୁମେ ଯାଅ ।

ରାଜମାତା ପୁଅଙ୍କୁ ସବୁ କଥା କହି ଘୋଡ଼ାଟିଏ ଦେବାକୁ ମତାଇଲେ । ତା'ପରେ ରଜା ମାଆଙ୍କ କଥାରେ ପୁରୋହିତଙ୍କୁ ଘୋଡ଼ାଟିଏ ଦେଲେ । ଘୋଡ଼ା ପାଇ ପୁରୋହିତ ମହାଖୁସି । ଏଣିକି ପୁରୋହିତ ଘୋଡ଼ା ଦଉଡ଼ରେ ମାତିଲେ । ରାଜା ଦିନାକେତେ ପୁରୋହିତଙ୍କ ଘୋଡ଼ା ଦଉଡ଼ ସହିଲେ । ପଛକୁ ଆଉ ସହି ପାରିଲେ ନାହିଁ । ଦେଖିଲେ ଯେ ଏ ବ୍ରାହ୍ମଣ ମିଛରେ ଘୋଡ଼ାଟେ ଠକି ନେଇଗଲା । ୟାକୁ ପାନେ ନ ଦେଲେ ହବ ନାହିଁ । ଏହିକଥା ସ୍ଥିର କରି ଦିନେ ପୁରୋହିତଙ୍କୁ ଡକାଇଲେ । ପୁରୋହିତେ

ଆସିବା ବେଳକୁ ଗଦାଏ ଘସି ନିଆଁରେ ଦୁଇଟା ଲୁହା ଖଡ଼ିକା ପାଚିକରି ରହିଥାଏ । ପୁରୋହିତେ ପହଞ୍ଚିବାରେ ରଜା କହିଲେ – ବୁଝିଲ ପୁରୋହିତେ । ମୁଁ କାଲି ସ୍ୱପ୍ନରେ ଦେଖିଲି – ଘୋଡ଼ା ସିନା ନେଇ, ଦଦେଇଙ୍କର ଆଣ୍ଠୁ ବାତ ଛାଡୁନାହିଁ, ଆଉ ଘୋଡ଼ା ଚଢ଼ିବେ କଅଣ ? ସେଇଥିରୁ ସେ ବିକଳ ହୋଇ ମତେ କହିଲେ ଆରେ – ଘୋଡ଼ା ସିନା ଦେଲୁ, ବାତ ନ ଛାଡ଼ିଲେ ଘୋଡ଼ା କେଉଁ କାମରେ ଲାଗିବ ? ମୁଁ ଆଣ୍ଠୁ ଲାଗି ବଡ଼ କଷ୍ଟ ପାଉଛି, ତୁ ଯେଉଁ ବ୍ରାହ୍ମଣକୁ ଘୋଡ଼ା ଦାନ ଦେଲୁ, ତା'ର ଆଣ୍ଠୁ ଯେବେ ଲାଛି ଦିଅନ୍ତୁ, ତେବେ ମୋ ଆଣ୍ଠୁ ଭଲ ହୋଇଯା'ନ୍ତା । ନ ହେଲେ ମୁଁ କଷ୍ଟ ପାଉଥିବି, ଆଣ୍ଠୁ ଭଲ ନ ହେଲେ ଘୋଡ଼ା ଚଢ଼ିବି କେମିତି ? ସେଥିପାଇଁ ଲୁହାଖଡ଼ିକା ପାଚି କରି ଅଛି । ଆସ ତୁମ ଆଣ୍ଠୁ ଦିଓଟି ଲାଛି ଦେବା । ରଜା ଯା କହି କହିଲେ – କିଏ ଅଛରେ ପୁରୋହିତଙ୍କ ଆଣ୍ଠୁ ଲଛା ହେବ । ଚାରଗଣ ମାଡ଼ିଆସିଲେ । ସାଙ୍ଗେ ସାଙ୍ଗେ ଚାରି ଜଣ ମାଡ଼ିବସିଲେ । ପୁରୋହିତେ ଏତିକିରେ ମାଲୋ, ବାପାଲୋ, ମରିଗଲି ଲୋ ବୋଲି କୁଳୁମୁଛୁଳି ରଡ଼ିପକାଇଲେ । ଏହାପରେ ଆଉ ଜଣେ ଯେତେବେଳେ ପାଚିଲା ଲୁହାଖଡ଼ିକା ଆଣି ଆଣ୍ଠୁ ପାଖେ ଧଇଲା, ସେତେବେଳେ ଅତର୍କରେ ରଡ଼ିକରି କହିଲେ – ଆଜ୍ଞା, ମୁଁ ମିଛ କହିଛି, ଠକିକରି ଘୋଡ଼ା ନେଇଛି, ଆଉ ଦିନେ ଏପରି କରିବି ନାହିଁ, ମତେ ଛାଡ଼ି ଦିଅନ୍ତୁ, ନ ହେଲେ ମୁଁ ମରିଯିବି ।

ରଜା କହିଲେ – ତେବେ ଏସବୁ କଥା ମିଛ ? ସେ କହିଲେ – ଆଜ୍ଞା, କଞ୍ଚା ମିଛ । ରଜା କହିଲେ – ଆଚ୍ଛା ତୁମକୁ ଛାଡ଼ି ଦିଆଗଲା, ଆଉ ଦିନେ ଇମିତି କରିବ ନାହିଁ । ତୁମେ ତ ବ୍ରାହ୍ମଣ । ଆଉ କିଏ ହୋଇଥିଲେ ଘୋଡ଼ାଟି ଛଡ଼ାଇ ନେଇଥା'ନ୍ତା । ହଁ, ହଉ, ଏବେ ଘରକୁ ଯାଅ । ପୁରୋହିତ ପ୍ରାଣ ପାଇ ଧଇଁ ସଇଁ ହୋଇ ଘରକୁ ଗଲେ ।

ଆଣ୍ଠୁଲଛା ହୋଇ ନ ଥିଲେ କ'ଣ ସତ କଥା ବାହାରିଥା'ନ୍ତା ?



# ହେଣ୍ଡିଲୋ, କାଣୀ ଝିଅ ଦେଲି ଭଣ୍ଡିଲୋ

ଗୋଟିଏ କରଣ ଘରେ ଗୋଟିଏ ଝିଅ ଥିଲା । ସେ ପିଲାଟି ଜନ୍ମରୁ କାଣୀ । ତା'ର ବାପାଭାଇ ନ ଥିଲେ । ଥିଲା କେବଳ ଗୋଟିଏ ମା' । ଝିଅର ବିବାହ ବୟସ ହେଲା । ଚାରିଆଡ଼େ ବର ଖୋଜା ହେଲା । ଝିଅ କାଣୀ ହେତୁରୁ କେହି ମଙ୍ଗିଲେ ନାହିଁ । ବର ନ ମିଳିବାରୁ ମା' ବଡ଼ ଭାଳେଣିରେ ପଡ଼ିଲା ।

ଆଉ ଗୋଟେ ଦୂର ଗାଁ'ରେ ଜଣେ ଲୋକର ଗୋଟିଏ ପୁଅ ଥିଲା । ସେ ପୁଅଟି ପିଲାଦିନରୁ ବାତଜରିଆ । ରକ୍ତ ଗଡ଼ିଗଡ଼ି ଗୋଡ଼ ଯୋଡ଼ିକ କଦଳୀଗଛ ପରି ମୋଟ ହୋଇଥିଲା । ତା' ପାଇଁ ଚାରିଆଡ଼େ କନ୍ୟା ପାତ୍ର ଖୋଜାଗଲା । ଗୋଦର ଗୋଡ଼ ଦେଖି କେହି କନ୍ୟା ଦେବାକୁ ମଙ୍ଗିଲେ ନାହିଁ । ବାପ, ପୁଅର ବିବାହ ପାଇଁ ବଡ଼ ଭାଳେଣିରେ ପଡ଼ିଥାଏ । ଏଥିମଧ୍ୟରେ କାଣୀ କନ୍ୟାର ଜଣେ ଆତ୍ମୀୟ ଲୋକ ତା' ଘରକୁ ବରପାତ୍ର ପାଇଁ ଆସିଲା । ବରପିତା କନ୍ୟା ଦେଖା କଥା ନ ପକାଇ ବିବାହ ପାଇଁ ଜବାବ ଦେଇଦେଲା । କନ୍ୟାପକ୍ଷର ଲୋକ ମଧ୍ୟ ବର ଦେଖିବା ଦରକାର କଲାନାହିଁ । ଦୁଇପକ୍ଷ ଜବାବ ସ୍ଥିର ହୋଇଯିବାରୁ ଖୁସି ହୋଇଗଲେ । ବରପିତା କନ୍ୟା ଜୁଟିବାରେ, କନ୍ୟାପକ୍ଷ ବର ଯୁଟିବାରେ ଖୁସି । ସମସ୍ତଙ୍କର ଖୁଣ ଅଛି; ମାତ୍ର ଦେଖୁଛି କିଏ ? ବରପକ୍ଷ ବିଚାରୁଥାଏ, ବର ନ ଦେଖି କିପରି ହାତଗଣ୍ଠି ପଡ଼ିଯାଉ । କନ୍ୟାପକ୍ଷ ମଧ୍ୟ ବିଚାରୁଥାଏ କନ୍ୟା ନ ଦେଖି ହାତଗଣ୍ଠି ପଡ଼ିଯାଉ ।

ବିବାହ ଦିନ ସ୍ଥିର ହେଲା । ବରକର୍ତ୍ତା ପୁଅର ଗୋଦର ଗୋଡ଼ ଲୁଚାଇବାକୁ ବହୁତ ସାବଧାନ ହେଲା । ସେ କାଳରେ ବର ପାଇଜାମା, ଅଚକନ ପିନ୍ଧି ବର ବେଶ ହେଉଥିଲା । ଜଣ ଜଣକ ଘରେ ସେଥିରୁ ଗୋଟିଏ ଗୋଟିଏ ସାଜ ଥାଏ । ତାହା ଢୁଙ୍ଗା ଢୁଙ୍ଗା ହୋଇ ତିଆରି ହୋଇଥାଏ । ସୁତରାଂ ମୋଟା ମଣିଷ, ପତଳା ମଣିଷ ସମସ୍ତଙ୍କୁ ସେ

ପୋଷାକ ହୋଇଯାଏ । ଯାହାର ଦରକାର ହୁଏ, ସେ ସେଇ ପୋଷାକ ମାଗି ଆଣି କାମ ଚଳାଇଦିଏ ।

ଗୋଦର ବର ପାଇଁ ସେଇ ପୋଷାକ ଖୋଜା ହୋଇଆସିଲା । ବର ପିନ୍ଧିଲା । ତାହା ତାକୁ ଆହୁରି ଭଲ ହେଲା । ପାଇଜାମା ଲମ୍ବା ଏବଂ ଢୁଙ୍ଗା ହେବାରୁ ପାଦ ଘୋଡ଼ାଇଲା ଏବଂ ଗୋଦର ଘୋଡ଼ାଇଲା । ପୋଷାକ ପିନ୍ଧିବା ପରେ ବରକୁ କେହି ଗୋଦର ବୋଲି ଜାଣିପାରିଲେ ନାହିଁ । ବରପକ୍ଷ ବରଜାତି ନେଇ ବାଜା ବଜାଇ ବିବାହ ହୋଇଗଲା ।

ତେଣେ କନ୍ୟାର ମା' କନ୍ୟାକୁ ମଙ୍ଗୁଳିତି ଖୁଆଇ ଲମ୍ବାଚୌଡ଼ା ଶାଢ଼ି ପିନ୍ଧାଇ ସଜାଡ଼ିସୁଜୁଡ଼ି ରଖିଥାଏ । କିମିତି ହାତଗଣ୍ଠି ପଡ଼ିଗଲେ ସେ ଖଲାସ ହେବ, ସବୁବେଳେ ତା'ର ଏଇ ଚିନ୍ତା ।

ବର ଆସିଲା, ବାଟବରଣ କରିନେଲେ । ବେଦୀରେ କର୍ମ ହେଲା । ଝିଅକୁ ଘୋଡ଼େଇ ଘାଡ଼େଇ ବେଦୀକି ଆଣିଲେ । କାଣୀର ମା'କୁ ଗୁଡ଼ାଏ କର୍ମ ଭଲ ଲାଗୁ ନ ଥାଏ । ସେ ଖାଲି ହାତଗଣ୍ଠିକି ଚାହିଁଥାଏ । ଦେଖୁ ଦେଖୁ ହାତଗଣ୍ଠି ପଡ଼ିଗଲା । ତାହା ହୋଇଯିବାରେ କାଣୀର ମା' ଦୀର୍ଘନିଃଶ୍ୱାସ ପକାଇ କହିଲା – "ହେଣ୍ଡି ଲୋ, କାଣୀଝିଅ ଦେଲି ଭଣ୍ଡି ଲୋ ।"

ଏହାଶୁଣି ଜୋଇଁ ଦେଖିଲା – ସତ ତ, କନ୍ୟାଟା କାଣୀଟେ । ସେ ଆଉ କାହିଁକି ଡରିବ ? ସାଙ୍ଗେ ସାଙ୍ଗେ ଗୋଦର ଗୋଡ଼ରୁ ପାଇଜାମା ଟେକି ବିଗୋଡ଼ ଶାଶୂକୁ ଦେଖେଇ ଦେଇ କହିଲା –

"ଶାଶୂ ମୋର କାହିଁକି ନାଚନ୍ତି,
କାଣୀ ଝିଅକୁ ଗୋଦର ବର ଏଇଠି ଅଛନ୍ତି ।"

ଏତିକିରେ ଶାଶୂ ଥଣ୍ଡା ।



# ମୋ ପୁଅ ସୁନା ଥାଳିରେ ଖାଇବାର ମୁଁ ଦେଖିବି

ଜଣେ ଅନ୍ଧ ଥିଲା । ସେ ଅତି ଦରିଦ୍ର । ତା'ର ପୁଣି ଝିଅ କିଛି ନ ଥିଲା । ଯାଠାରୁ ବଳି ଲୋକର କି ଅଭାଗ୍ୟ ହୋଇପାରେ । ସେ କୁଆଡୁ କିଛି ଉପାୟ ନ ପାଇ ମହାଦେବଙ୍କ ପାଖରେ ଗୁହାରିଆ ପଡ଼ିଲା । କେତେଦିନ ପଡ଼ିବା ପରେ ମହାଦେବ ପ୍ରସନ୍ନ ହୋଇ କହିଲେ – ଆରେ ଅନ୍ଧ । ଆମେ ତୋ ଉପରେ ପ୍ରସନ୍ନ ହୋଇଅଛୁ । ସେହି ହେତୁରୁ ତୋତେ ଗୋଟିଏ ବର ଦେବୁ । ତୁ ସେହି ଗୋଟିକ ବର ମାଗିବୁ, ସେଥିରୁ ଅଧିକ ମାଗିଲେ କିଛି ପାଇବୁ ନାହିଁ । ଅନ୍ଧ ଏହା ଶୁଣି ବଡ଼ ଅଡୁଆରେ ପଡ଼ିଲା । କାହିଁକି ନା, ତା'ର ବହୁତ ବର ଦରକାର । ପ୍ରଥମ କଥା ତା'ର ଆଖି ନାହିଁ, ତାହା ନ ମାଗିବ କିମିତି ? ପୁଣି ଧନ ନ ହେଲେ ବଞ୍ଚିବ କିପରି ? ତାହା ନ ମାଗିଲେ ତ ନ ଚଳେ । ପୁଣି କେଉଁ ଲୋକ ଅବା ପୁଅ ନ ଚାହେଁ ? ତାହା ବା ନ ମାଗିବ କିପରି ? କିନ୍ତୁ ମହାଦେବ ତ କହିଛନ୍ତି – ଗୋଟିଏ ବର ମାଗିବାକୁ ହେବ । ତେବେ ଏତେଗୁଡ଼ିଏ ବର ତ ମାଗି ହେବନାହିଁ । କଅଣ କରିବ ଭାବି ଭାବି ବିଚରା ଗୋଟେ ବୁଦ୍ଧିରେ କହିଲା – ମହାପ୍ରଭୋ । ମତେ ଏହି ବର ଦିଅ –

"ମୋ ପୁଅ ସୁନା ଥାଳିରେ ଖାଇବାର ମୁଁ ଦେଖିବି ।"

ଏଥିରେ ମହାଦେବଙ୍କର ଅକଲ ବନ୍ଦ । ସେ ତ ଗୋଟିଏ ବର ମାଗିଛି, ନ ଦେବେ କିପରି ? କିନ୍ତୁ ବୁଝିଲା ବେଳକୁ ସେଥିରେ ଆଖି ରହିଲା, ଧନ ରହିଲା, ପୁଅ ମଧ୍ୟ ରହିଲା । ପୁଅ ମଧ୍ୟ ହେଲା । ପୁଅ ତ ପୁଣି ସୁନା ଥାଳିରେ ଖାଇବ, ଧନ ନ ହେଲେ ସୁନାଥାଳି କାହିଁ ହେବ ? ସୁତରାଂ ପ୍ରଚୁର ଧନ ମଧ୍ୟ ହେଲା ।

ଅନ୍ଧ ବୁଦ୍ଧି ଖଟାଇ ବର ମାଗିଲା ବୋଲି ସିନା ଏତେ କଥା ହେଲା ?



# ଯେବଣ ଘରକୁ ତେବଣ ଋଷି

ଜଣେ ବାବାଜି ବୁଲି ବୁଲି ରାତି ଦି'ଘଡ଼ିକି ଗୋଟିଏ ଚଣ୍ଡାଳ ଗାଁ'ରେ ପହଞ୍ଚିଲେ । ବାବାଜି ସକାଳୁ କିଛି ଖାଇ ନ ଥା'ନ୍ତି, ଭୋକରେ ପେଟ ଜଳୁଥାଏ । ସେ ଭୋକ ଦାଉରେ ଚଣ୍ଡାଳର ଜାତି ଧର୍ମ ନ ପଚାରି କହିଲେ – ବାବା । ସକାଳୁ ଖିଆ ହୋଇନାହିଁ, ମୁଠିଏ ଖାଇବାକୁ ଦେ ତୋର ଧର୍ମ ହେବ ।

ଚଣ୍ଡାଳ ଦେଖିଲା ଯେ ଯେ ବାବାଜି ଲୋକ, ଚିତାଚଇତନ କାଟିଚନ୍ତି ମାଳୀମାତ୍ରା ପକାଇଛନ୍ତି; ମୁଁ ଜାତିରେ ମେହେନ୍ତର, ୟାଙ୍କୁ କେମିତି ଖାଇବାକୁ ଦେବି ? ୟା କଲେ ନିଶ୍ଚୟ ଅଧର୍ମ ହେବ । ଏହା ଭାବି କହିଲା – ବାବାଜି ମହାରାଜ । ମୁଁ ଜାତିରେ ମେହେନ୍ତର, ଆପଣ ହେଉଚ ବୈଷ୍ଣବ, ମୁଁ ଜାଣିଶୁଣି ଏ ପାପ କରିପାରିବି ନାହିଁ ।

ବାବାଜି ଦେଖିଲେ ଯେ ଏଠାରେ ନିଜର ପରିଚୟ ନ ଦେଲେ ଗଣ୍ଡାଏ ଖାଇବାକୁ ମିଳିବ ନାହିଁ । ତେଣୁ ସେ ପରିଚୟ ଦେବାକୁ କହିଲେ – ବାବା । ଆମେ କି ଜାତି ଜାଣ ?

"କାଶୀ ଟମକିଆ ଗୋପରେ ଘାସୀ,
ବର୍ତ୍ତନ ନ ପାଇ ହେଲୁ ସନ୍ନ୍ୟାସୀ ।
ଯେବଣ ଘରକୁ ତେବଣ ଋଷି,
ରନ୍ଧାବଢ଼ା କର ଖାଇବା ବସି"

ମେହେନ୍ତର ଯହୁଁ ଜାଣିଲା – ବାବାଜୀ ନିଜ ଜାତି, ସେଇଠୁଁ ଶାଗଭାତ କରି ଯାହା ପାରିଲା, ସେଇଥିରେ ମୁଠିଏ ଖାଇବାକୁ ଦେଲା ।

ପ୍ରକୃତରେ ପେଟ ବିକଳରେ ବାବାଜିଙ୍କ ଭିତରେ ଏହିପରି ଗୁଡ଼େ ମାଧିଆ ଯୋଗୀ ଅଛନ୍ତି ।



# ବିଷ୍ଣାୟ ନମଃ

ଜଣେ ମୂର୍ଖ ପୁରୋହିତ ଦିନେ ଜଣେ ଜମିଦାରଙ୍କ ଘରେ ହୋମ କରୁଥିଲେ। ଜମିଦାର ସେ ଦିନ ମଧ୍ୟ କେତେ ଜଣ ପଣ୍ଡିତ ନିମନ୍ତ୍ରଣ କରିଥିଲେ । ପଣ୍ଡିତମାନେ ଆସନରେ ବସି ହୋମ ଦେଖୁଥା'ନ୍ତି । ପୁରୋହିତ ହୋମ କରୁଥାଏ । ହୋମ କରୁ କରୁ ଠାଏ ବିଷ୍ଣବେ ନମଃ କହିବାକୁ ପଡ଼ିଲା । ପୁରୋହିତ ତ ଗଜ ମୂର୍ଖ । ସେ ବିଷ୍ଣବେ ନମଃ ନ କହି, କହିଲା – ବିଷ୍ଣାୟ ନମଃ । ଏତିକି ଅଶୁଦ୍ଧ କି ପଣ୍ଡିତଙ୍କ ଦେହରେ ସୁହାଯିବ ? ସାଙ୍ଗେ ସାଙ୍ଗେ ଜଣେ ପଣ୍ଡିତ କହିଲେ – ଆରେ ବିଷ୍ଣାୟ ନମଃ କଅଣ ?

ପୁରୋହିତ କହିଲା – ଶିବାୟ ନମଃ ଯଥାଂ ।

ପଣ୍ଡିତେ କହିଲେ – ଆରେ, ଯଥାଂ କଥାଂ ସିଦ୍ଧଂ ।

ପୁରୋହିତ କହିଲା – କଥାଂ ଯଥାଂ ସିଦ୍ଧଂ ।

ପଣ୍ଡିତମାନେ ପୁରୋହିତର ଏ ଅଗାଧ ବିଦ୍ୟା ଦେଖି ଠୋ ଠୋ ହସିଲେ ।

ତା' ଛଡ଼ା ଏଭଳି ଲୋକଙ୍କୁ କଅଣ କହନ୍ତେ ?



# ଚୋରି ମୋର ଅଭ୍ୟାସ

ଜଣେ ଲୋକ ପିଲାଦିନୁଁ ଚୋରି କରୁଥିଲା । ରୋଜ୍ ଦୁଇ ତିନି ନମ୍ବର ଚୋରି ନ କଲେ ରାତିରେ ତା'ର ନିଦ ହୁଏ ନାହିଁ । କାହା ବାଡ଼ିରୁ କଦଳୀ କାନ୍ଧିଏ, କାହା ବାଡ଼ିରୁ କୋଶଳା ଶାଗ କେରାଏ, କାହା ଘରୁ ଗାମୁଛାଟେ, କେଉଁଠୁ ଅବା ଗିଲାସୁଟେ ଏହିପରି ଯାହା ପାଏ, ଚୋରି କରେ । ସେ ବହୁତ ଥର ଧରାପଡ଼ିଲା । ଲୋକେ ବହୁତ ଗାଳି ଫଜିତ୍ ଦେଲେ, ଜୋରିମାନା ମଧ୍ୟ ହେଲା; ତଥାପି ସେ ତାହା ଛାଡ଼ି ପାରିଲା ନାହିଁ । ଘରେ ବାପା ମାଆ ଭାଇ ଭାଉଜ ସମସ୍ତେ ଥାଆନ୍ତି । ଘରେ ଖାଇବା ପିଇବାର ମଧ୍ୟ ଅଭାବ ନ ଥାଏ । ତେବେ ସୁଦ୍ଧା ସେ ଚୋରି କରେ । ବାପ ମା' ତାକୁ ବହୁତ ଆକଟ କଲେ, ମାଡ଼ ଗାଳି ମଧ୍ୟ କଲେ; କିନ୍ତୁ କାହିଁରେ କିଛି ହେଲା ନାହିଁ । ପଛକୁ ତାକୁ ଘରୁ ତଡ଼ିଦେଲେ । ବିଚରା ଘରୁ ତଡ଼ାଖାଇ ବାବାଜି ବେଶ ସାଜି ଗୋଟେ ବାବାଜି ମେଳରେ ପଶିଲା । ବାବାଜିମାନେ କିଏ କୁଆଡ଼ର କିଛି ଠିକଣା ନାହିଁ । ଭିକ ମାଗି ଯେ ଯାହାର ପେଟ ପୋଷନ୍ତି । ଖାଲି ରାତିରେ ଏକାଠେଇଁ ଶୁଅନ୍ତି । କାହାରି ପାଖେ ଟଙ୍କା, ସୁନା, ପାଟ ଶାଲ୍ କିଛି ନ ଥାଏ । ଖାଲି ଚିରାକନା, କୌପୁନୀରେ ଗୋଟିଏ ଗୋଟିଏ ଗଣ୍ଠିଲା କରିଥା'ନ୍ତି ।

ରାତିରେ ଶୋଇଲାବେଳେ ଯେ ଯାହାର ଗଣ୍ଠିଲାଟିମାନ ମୁଣ୍ଡତଳେ ଦେଇ ଶୁଅନ୍ତି । ଚୋର ବାବାଜିର ତ ଅଭ୍ୟାସ – ଚୋରି କରିବା, ନ ହେଲେ ତାକୁ ନିଦ ହେବ ନାହିଁ । ସେଠାରେ ଅବା ଚୋରି ଜିନିଷ କଅଣ ଅଛି କି ? ସମ୍ପତ୍ତି ମଧ୍ୟରେ ଚିରାକନା ଗଣ୍ଠିଲା । ଚୋର ବାବାଜି ଆଉ କିଛି ସୁବିଧା ନ ପାଇ ସବୁ ବାବାଜିଙ୍କୁ ନିଦ ହୋଇଯିବା ପରେ ଯା ଗଣ୍ଠିଲା ତା' ମୁଣ୍ଡ ତଳେ, ତା' ଗଣ୍ଠିଲା ଯା ମୁଣ୍ଡ ତଳେ, ଏହିପରି ଗୁଡ଼ାଏ କରି ଶୋଇପଡ଼େ । ସକାଳେ ଦେଖିଲା ବେଳକୁ କାହାରି ଗଣ୍ଠିଲାର ଠିକଣା

ନାହିଁ । ବାବାଜିମାନେ ଏହା ଦେଖି କାବ୍‌ବା ହେଲେ । ଏହିପରି କରୁଚି କିଏ ଜାଣିପାରିଲେ ନାହିଁ । ଦିନାକେତେ ଏହିପରି ଗଣ୍ଡଗୋଳ ହେଲା । ଦିନେ ଦିନେ ବାବାଜି ନ ଶୋଇ ଚୋର ଧରିବାକୁ ଚେଇଁ ରହିଲା । ଯେତେବେଳେ ଚୋର ଗଣ୍ଠିଲାସବୁ କାଢ଼ିଲା, ସେତେବେଳେ ସେ ବାବାଜି ଚଟ୍‌କିନା ତା' ହାତକୁ ଧରି ପକାଇ ଡାକ ପକାଇଲା । ତା' ଡାକରେ ସବୁ ଉଠି ଦେଖନ୍ତି ତ ଚୋର ଧରା ପଡ଼ିଛି । ସମସ୍ତେ ତାକୁ ପଚାରିଲେ – କିରେ ! ତୁ ଏପରି କାହିଁକି କରୁଛୁ ?

ସେ କହିଲା ଚୋରି ମୋର ଅଭ୍ୟାସ । ତାହା ନ କଲେ ମୋତେ ନିଦ ହୁଏନାହିଁ । ସେମାନେ କହିଲେ – ବାଃ, ଭଲ ଅଭ୍ୟାସଟେ କରିଚୁ ? କହିଲେ ସିନା ସେ କଅଣ ସେ ଅଭ୍ୟାସ ଛାଡ଼ିଲା ।

କଥାରେ ଅଛି – ଢିଙ୍କି ସ୍ୱର୍ଗକୁ ଗଲେ ସେଇ ଧାନ କୁଟେ । ବାବାଜି ହେଲେ କ'ଣ ହେବ, ଅଭ୍ୟାସ ଛାଡ଼ିଲେ ସିନା ?



# ତ୍ରିଫଳା ବୈଦ୍ୟ

କୌଣସି ରାଜଡ଼ାରେ ଜଣେ ରାଜବୈଦ୍ୟ ଥିଲେ । ସେ ବଡ଼ ଅମୃତହସ୍ତା । ଚାରିଆଡ଼େ ତାଙ୍କ ନାଁ' ବାଜୁଥିଲା । କ୍ରମେ କ୍ରମେ ସେ ବୁଢ଼ା ହୋଇଗଲେ । ତାଙ୍କର ଗୋଟିଏ ମାତ୍ର ପୁଅ ଥିଲା, ପୁଅଟି ନିର୍ବୁଦ୍ଧିଆ । ଘରର ସିଦ୍ଧି ରଖିବାକୁ ବାପ ପୁଅ ପ୍ରତି ବହୁତ ଯତ୍ନ କଲେ; ମାତ୍ର ସବୁ ବିଫଳ ହେଲା । ବାପ ବଡ଼ ବ୍ୟସ୍ତ ହେଲେ । ମଲା ବେଳକୁ ପୁଅକୁ ଡାକି କହିଲେ – ଆରେ ! ତୋର ତ ପାଠ ଶାଠ କିଛି ହେଲା ନାହିଁ; ଏବେ ମୁଁ ଗୋଟିଏ କଥା କହୁଚି, ମନେରଖ । ସେତିକି କରିପାରିଲେ ତୁ ଖାଇପିଇ ଜୀବନଟା ଚଳାଇଦେବୁ ।

କଥା ଏତିକି – ତ୍ରିଫଳା କହିଲେ – ହରିଡ଼ା, ବାହାଡ଼ା, ଅଁଳା । ଏ ତିନୋଟି ସମାନ ଭାଗରେ ମିଶାଇ ଗୁଣ୍ଡକରି ବତୁରାଇ ଛାଣିଦେଇ ସେ ପାଣିଟା ପିଇଲେ ମହା ମହା ବ୍ୟାଧି ଆରୋଗ୍ୟ ହୁଏ । ତୁ ଆଉ କିଛି ନ କରି ଯେ ଯେଉଁ ରୋଗ ପାଇଁ ତୋ ପାଖକୁ ଆସିବ, ତୁ ତାକୁ ଖାଲି ତ୍ରିଫଳା ଔଷଧ ଦେବୁ ଏତିକି କରି ପାରିଲେ ରୋଗୀର ରୋଗ ଯିବ, ତୁ ଦି'ପଇସା ପାଇ ଖୁସିରେ ଚଳିବୁ । ପୁଅ ସେଥିରେ ରାଜି ହେଲା । ବାପା ଥାଉ ଥାଉ ମଧ୍ୟ କେତେ ଜାଗାରେ ସେ ଔଷଧ ଦେଇ ଫଳ ପାଇଲା । କିଛି ଦିନ ପରେ ବାପା ମଲେ । ଏଣିକି ସବୁପ୍ରକାର ରୋଗୀ ପୁଅ ପାଖକୁ ଶହ ଶହ ଆସିଲେ । ପୁଅକୁ ସେଇ ତ୍ରିଫଳା ଜଳ ଛଡ଼ା ଆଉ ତ କିଛି ଜଣାନାହିଁ । ତେଣୁ ସବୁ ରୋଗକୁ ସେଇ ତ୍ରିଫଳା ଜଳ ଦେଲା । ପ୍ରକୃତରେ ତ୍ରିଫଳାରେ ଆଉ କିଛି ହଉ ନ ହଉ ଝାଡ଼ାଟା ସଫା ହୁଏ । ଝାଡ଼ା ସଫା ହେଲେ ଅନେକ ରୋଗ ଉଣା ହୋଇଯାଏ । ଲୋକେ ତ୍ରିଫଳା ଜଳ ଖାଇ ଭଲ ହେବାରେ ବୈଦ୍ୟଙ୍କର ନାଁ ଚାରିଆଡ଼େ ବାଜିଲା । କ୍ରମେ କ୍ରମେ ବହୁତ ରୋଗୀ ପାଖକୁ ଆସିଲେ ।

ଦିନେ ଜଣକର ଗାଈଟା ହଜିଥାଏ । ସେ ଖୋଜି ଖୋଜି ନୟାନ୍ତ ହେଲାଣି । ରାତି ଦି'ଘଡ଼ି ହେଲା, ତେବେ ସୁଦ୍ଧା ଗାଈ ନ ମିଳିଲା । ଦୈବାତ୍ ତ୍ରିଫଳା ବୈଦ୍ୟଙ୍କ ସଙ୍ଗେ ତା'ର ଦେଖା ହେଲା । ବୈଦ୍ୟ ପଚାରିଲେ – କିଓ, କାହିଁକି ବଡ଼ ବ୍ୟସ୍ତ ଦେଖାଯାଉଛ ? ସେ କହିଲା ବ୍ୟସ୍ତ କ'ଣ କି, ଗାଈଟା କୁଆଡ଼େ ଗଲା ଖୋଜି ଖୋଜି ପାଉନାହିଁ । ବୈଦ୍ୟ ତ ଜାଣିଛନ୍ତି – ତ୍ରିଫଳା ସବୁଥିକି ପାଏ; ତେଣୁ କହିଲେ – ଏଇକଥା ତ ? ବ୍ୟସ୍ତ ହୁଅ ନାହିଁ । ମୁଁ ପାନେ ଔଷଧ ଦଉଛି, ଖାଇ ଦେଖନ୍ତୁ, ଗାଈ ଆପେ ଆପେ ଆସିଯିବ ।

ସେ ଲୋକ କହିଲା – ହୟେ ଔଷଧ ଖାଇଲେ ଗାଈ ମିଳେ, ଯେ ବଡ଼ ଅସମ୍ଭବ କଥା । ୟା ଶୁଣି ନ ଥିଲା । ବୈଦ୍ୟ କହିଲେ – ହଉ ଖାଇ ଦେଖ – ସମ୍ଭବ କି ଅସମ୍ଭବ । ସେ କହିଲା ହଉ, ହେଲା ପରୀକ୍ଷା କରିବା । ସେ ରାଜି ହେବାରୁ ବୈଦ୍ୟ ଟାଣୁଆ କରି ପାନେ ତ୍ରିଫଳା ଜଳ ଦେଲେ । ସେ ତ ପାନେ ତ୍ରିଫଳା ଖାଇଛି, ଆଉ ଯାଏ କୁଆଡ଼େ ? ଗାମୁଛା ଖଣ୍ଡେ ପିନ୍ଧି ରାତିଯାକ ପୋଖରୀ ହୁଡ଼ାକୁ ଝାଡ଼ା ଫେରିଧାଇଁଚି । ସେ ରାତିରେ ଗାଈଟା ବୁଲି ବୁଲି ଦୈବାତ୍ ସେଇ ପୋଖରୀ ହୁଡ଼ାରେ ଆସି ପହଞ୍ଚିଲା । ସେ ଲୋକ ତରବର ହୋଇ ପାଣି ଘେନି ଗାଈଟାକୁ ଆଣି ଗୁହାଳେ ବାନ୍ଧିଲା । ଗାଈ ମିଳିଯିବାରୁ ବୈଦ୍ୟଙ୍କୁ ମନେ ମନେ ଭାରି ପ୍ରଶଂସା କଲା । ତହିଁଆର ଦିନ ମଧ୍ୟ ବୈଦ୍ୟଙ୍କୁ ଔଷଧରେ ଯେପରି ଗାଈ ମିଳିଲା, ସେସବୁ କଥା ଲୋକଙ୍କୁ କହିଲା । ଲୋକେ ଶୁଣି ଆଶ୍ଚର୍ଯ୍ୟ ହେଲେ । ଏକଥା ମଧ୍ୟ ରଜାଙ୍କ କାନକୁ ଗଲା ।

ଏହାର କେତେ ଦିନ ପରେ ଗୋଟେ ଶତ୍ରୁରଜା ସେ ରାଜ୍ୟ ଆକ୍ରମଣ କରିବାକୁ ସୈନ୍ୟସାମନ୍ତ ଘେନି ପହଞ୍ଚିଲା । ଗଡ଼ ପାଖ ନଈକୂଳରେ ତମ୍ବୁମାନ ପକାଇ ରହିଲା । ସେ ଗୋଟେ ବଡ଼ ରାଜ୍ୟର ରଜା । ତା'ର ଅକଳନ ସୈନ୍ୟ । ଏ ଦେଶର ରଜା ଛୋଟିଆ; ସୈନ୍ୟବଳ ମଧ୍ୟ କମ୍ । ୟାଙ୍କ ସୈନ୍ୟ ମଧ୍ୟ ନଈ ଏ ପାଖରେ ତମ୍ବୁମାନ ପକାଇ ରହିଲେ । ରଜା ପ୍ରବଳ ଶତ୍ରୁ ଦେଖି ଭୟ କରୁଥା'ନ୍ତି । ମନ୍ତ୍ରୀଙ୍କୁ ଉପାୟ

ପଚାରିଲେ । ମନ୍ତ୍ରୀ କହିଲେ – ମତେ କିଛି ଉପାୟ ଦିଶୁନାହିଁ, ରାଜବୈଦ୍ୟଙ୍କୁ ଡକାଯାଇ ପଚରାଯାଉ, ତାଙ୍କୁ ଅବା କିଛି ଉପାୟ ଜଣାଥିବ । ରଜା କହିଲେ – ମନ୍ତ୍ରୀ ଭଲ କଥା ମନେ ପକାଇଦେଲେ । ଶୁଣିଛଟିକି ଆମ ବୈଦ୍ୟରାଜଙ୍କ ଗୁଣ ? ହୟେ, ଔଷଧ ଖାଇଲେ ହଜିଲା ଗାଈ ଆପେ ଆପେ ଆସୁଛି ? ମନ୍ତ୍ରୀ କହିଲେ – ଆଜ୍ଞା, ଏ କଥା କିଏ ନ ଜାଣିଛି ? ସେଥିପାଇଁ କହୁଛି – ବୈଦ୍ୟରାଜଙ୍କୁ ଡକାଯାଉ । ଡକରା ଗଲା, ସାଙ୍ଗେ ସାଙ୍ଗେ ରାଜବୈଦ୍ୟ ଆସିଲେ ।

ରଜା କହିଲେ – ବୈଦ୍ୟଭୂଷଣ । ବଡ଼ ବିପଦ ପଡ଼ିଛି, ସେଥିରୁ କିପରି ଉଦ୍ଧାର ପାଇବା, ଏଥିପାଇଁ ତୁମକୁ ଡାକରା । ବୈଦ୍ୟ କହିଲେ – ଆଜ୍ଞା ବିପଦ ରହିବ ? ପାନେ ପାନେ ଔଷଧରେ କୁଆଡ଼େ ଉଡ଼ିଯିବ । ବିପଦ କଅଣ ? କହନ୍ତୁ ।

ରଜା କହିଲେ – ନଈ ଆରପଟେ ପ୍ରବଳ ଶତ୍ରୁ ତମ୍ବୁ ପକାଇ ସୈନ୍ୟସାମନ୍ତ ଘେନି ରହିଲାଣି । କାଲି ନିଶ୍ଚେ ଯୁଦ୍ଧ ହେବ । ଆମର ତ ସୈନ୍ୟ ଅଳ୍ପ । ତାକୁ ଜିଣିଲା ପରି ଦିଶୁନାହିଁ । ରାଜ୍ୟଖଣ୍ଡି ନିଶ୍ଚେ ଯିବ, ଏକଥା ଢଳ ଢଳ ଦିଶିଲାଣି । ଏଥିକି ଉପାୟ କିଛି ଅଛି ?

ବୈଦ୍ୟ କହିଲେ – ମହାରାଜ, କିଛି ଭୟ କରନ୍ତୁ ନାହିଁ ? ମୁଁ ଯେଉଁ ଔଷଧ ଦେଉଛି, ସେଥିରୁ ପାନେ ପାନେ ସନ୍ଧ୍ୟାବେଳେ ଆମ ସୈନ୍ୟଙ୍କୁ ଦିଅନ୍ତୁ । ତ୍ରିଫଳାଗୁଣ୍ଡ ଟାଣୁଆ ପାନେ ପାନେ ପଡ଼ିଯିବାରୁ ସୈନ୍ୟମାନେ ଲୋଟା ଖଣ୍ଡେ ଖଣ୍ଡେ ଧରି ରାତିଯାକ ଧାଇଁଛନ୍ତି ନଈକି ଝାଡ଼ାଫେରି । କାହାର ପାଞ୍ଚଥର, କାହାର ସାତଥର ଝାଡ଼ା ତଲବ ।

ଶତ୍ରୁପକ୍ଷ ଏତେ ଲୋକ ଝାଡ଼ାଫେରିବାର ଦେଖି ଭାବିଲା – ଏ ରଜାର ଏତେ ସୈନ୍ୟ ଯେ ଲୋକେ ରାତିଟାଯାକ ଝାଡ଼ାଫେରି ଧାଇଁଛନ୍ତି । ଏ ସୈନ୍ୟ ତ କଳି ହେଉନାହିଁ । ଏ ରଜା ସଙ୍ଗେ ଯୁଦ୍ଧ କରି ତ ପାରିହେବ ନାହିଁ । ତେବେ ଯୁଦ୍ଧ କରି ଗୁଡ଼ାଏ ସୈନ୍ୟ ମରାଇ ଲାଭ କଅଣ ? ଏହା ଭାବି ରାତି ପାହିଲା ବେଳକୁ ସୈନ୍ୟସାମନ୍ତ ଘେନି ନିଜ ରାଜ୍ୟକୁ ପଳାଇଲା । ଏ ଦେଶ ରଜା ଶତ୍ରୁ ପଳାଇବା ଖବର ପାଇ ଖୁସି ହେଲେ ।

ସାଙ୍ଗେ ସାଙ୍ଗେ ରାଜବୈଦ୍ୟଙ୍କୁ ଡକାଗଲା । ରାଜବୈଦ୍ୟଙ୍କୁ ବହୁତ ବହୁତ ପ୍ରଶଂସା କଲେ । ପାଟ, କୁଣ୍ଡଳ, ସୁନାମୁଦି, ଜମିବାଡ଼ି ମଧ୍ୟ ପୁରସ୍କାର ରୂପେ ଦିଆଗଲା । ଏଥିରେ ବୈଦ୍ୟଙ୍କର ନାଁ ଦୂରଦୂରାନ୍ତରେ ବାଜିଗଲା । ଏଣିକି ରାଜବୈଦ୍ୟ ମହାସୁଖରେ ରହିଲେ ।

ଏହାର କେତେ ଦିନ ପରେ ରାଣୀ ହାଇମାରୁ ମାରୁ ଶିରା ଖଞ୍ଜି ହୋଇ ଯିବାରେ ପାଟିଟା ମେଲା ହୋଇ ରହିଗଲା; ଆଉ ମୁଦି ହେଲା ନାହିଁ । ରାଣୀ ବଡ଼ କଷ୍ଟ ପାଇଲେ । ସାଙ୍ଗେ ସାଙ୍ଗେ ରାଜବୈଦ୍ୟଙ୍କୁ ଡକାଗଲା । ବୈଦ୍ୟ ଆସିବାରେ ତାଙ୍କୁ ସବୁକଥା କୁହାଗଲା । ବୈଦ୍ୟ ତ ଅମୃତହସ୍ତା । ସେ କହିଲେ – ଆଜ୍ଞା ଆଜି ରାତିରେ ରୋଗ ଭଲ ହୋଇଯିବ । କିଛି ଭୟ ନାହିଁ । ଖାଲି ଔଷଧ ତିଆରି ପାଇଁ କିଛି ସମୟ ଲାଗିବ ।

ବୈଦ୍ୟଙ୍କ କଥା ଅନୁସାରେ ଔଷଧ ତିଆରି ପାଇଁ ପାଞ୍ଚ ସାତ ଜଣ ଲୋକ ଦିଆଗଲା । ବସ୍ତା ବସ୍ତା ତ୍ରିଫଳା ମଧ୍ୟ ପଠାଗଲା । ସେଗୁଡ଼ିକ ରଜାଘର ଲୋକ ଗୁଣ୍ଡ କଲେ । ତା'ପରେ ବୈଦ୍ୟ ବଟିକା ତିଆରିରେ ଲାଗିଲେ । ସେ ବଟିକା ତ ତୁମ ଆମ ଭଳି ଲୋକଙ୍କ ପାଇଁ ହେଉନାହିଁ, ଖୋଦ ରାଣୀ ସାହେବାଙ୍କ ପାଇଁ ହବ । ତାଙ୍କରି ଭଳି ଆଖିଦୃଷ୍ଟିଆ ନ ହେଲେ ତ ନ ଚଳେ । ତେଣୁ ବୈଦ୍ୟଙ୍କ ସେତକ ତ୍ରିଫଳାଗୁଣ୍ଡରେ ସାତ – ମାତ୍ରା ବଟିକା ବାନ୍ଧି ସାତ ଜଣ ବୋଝିଆଙ୍କ ସାହାଯ୍ୟରେ ସାଙ୍ଗରେ ଧରି ସନ୍ଧ୍ୟା ବେଳକୁ ରଜାଘରକୁ ଗଲେ । ରଜାରାଣୀ ବୈଦ୍ୟଙ୍କୁ ଚାହିଁ ରହିଥିଲେ । ବୈଦ୍ୟ ପହଞ୍ଚି ସାତ ବେତାରୁ ସାତମାତ୍ରା ବଟିକା କାଢ଼ି ରାଣୀଙ୍କ ଆଗରେ ଥୋଇଦେଇ କହିଲେ – ଆଜ୍ଞା, ଆଜି ରାତିରେ ଏ ସାତଟି ବଟିକା ଥରଥର କରି ଖାଇବାକୁ ହେବ । ଏ ସାତମାତ୍ରା ପେଟରେ ପଡ଼ିଗଲେ ରୋଗ ନା ରୋଗର ବାପା ରହିବ ? ରାଜାରାଣୀ, ପୋଇଲୀ ପରିବାରୀ ବଟିକା ରୂପ ଦେଖି ଏପରି ଠୋ ଠୋ ହସିଲେ ଯେ ସେ ହସରେ ସମସ୍ତେ ଅଣନିଶ୍ୱାସୀ ହୋଇଗଲେ । ସେହି ଅସମ୍ଭାଳ ହସରେ ରାଣୀଙ୍କର ପାଟିଟା ଚଳିଯିବାରେ ମେଲା ପାଟିଟା ପଡ଼ିଗଲା । ରୋଗ ତ

ସେତିକି ଥିଲା । ଔଷଧ ଦେଖିବାରେ ସେ ରୋଗ ଗଲା, ଆଉ ଔଷଧ ଖାଇବା ଦରକାର କ'ଣ ?

ରଜାରାଣୀ ଖୁସି ହୋଇ କହିଲେ – ଧନ୍ୟ ବୈଦ୍ୟ, ଧନ୍ୟ ଔଷଧ । ଔଷଧ ଦେଖୁ ଦେଖୁ ଯୁଠେଇ ରୋଗ ଯାଉଛି, ଆଉ ତୁମକୁ କ'ଣ କହିବା ?

ତା'ପରେ ରଜା ବୈଦ୍ୟଙ୍କୁ ବହୁତ ଧନ ରତ୍ନ ପୁରସ୍କାର ଦେଲେ । ବୈଦ୍ୟ ଜୀବନଟାଯାକ ମହା ସୁଖରେ ରହିଲେ ।

ତ୍ରିଫଳାର ପୁଣି ଏତେ ଗୁଣ ।



# ଖଡ଼ା ବଡ଼ି ଥୋଡ଼

ଗୋଟିଏ ଗାଁ'ରେ ଜଣେ ଲୋକ ଥିଲା । ସେ ବଡ଼ ବାହାପିଆ । ସେ ନିଜର ସବୁ କଥା ଦାଣ୍ଡରେ ବଡ଼କରି କହେ । ଟଙ୍କାଟିଏ ରୋଜଗାର କଲେ ପଚିଶ ବୋଲି କହେ । ଖୁଦଯାଉ ଖାଇଥିଲେ କାନିକା ବୋଲି କହେ । ତା'ର କଥା ଏହିପରି ।

ଦିନେ ପଞ୍ଚେ ଅକର୍ମା ଗୋଟେ ପିଣ୍ଡାରେ ବସି ଗପସପ କରୁଥିଲେ । ଯେ ବାହାପିଆ ଯାଇ ସେଥିରେ ଯୋଗଦେଲା । ତାଙ୍କର କଥା ପଡ଼ିଲା ଆଜି କିଏ କ'ଣ ଖାଇଛି । ଯେ ଯାହା ଖାଇଥିଲା, ସେ ତାହା କହିଲା । ବାହାପିଆକୁ ପଚାରିବାରୁ ସେ କହିଲା – ଆଜି ଆମ ଘରେ ଛ' ପ୍ରକାର ତରକାରି ହୋଇଥିଲା । ବାହାପିଆକୁ ସମସ୍ତେ ଚିହ୍ନିଛନ୍ତି । ତେଣୁ ପଚାରିଲେ – ଆଛା, ଛଅ ପ୍ରକାର, କ'ଣ କ'ଣ କହିଲୁ । ସେ କହିଲା –

ଏଁ ଖଡ଼ା ବଡ଼ି ଥୋଡ଼ । (ଏକ)
ତା'ପରେ ବଡ଼ି ଖଡ଼ା ଥୋଡ଼ । (ଦୁଇ)
ତା'ପରେ ଥୋଡ଼ ବଡ଼ି ଖଡ଼ା । (ତିନି)
ତା'ପରେ ବଡ଼ି ଖଡ଼ା ଥୋଡ଼ । (ଚାରି)
ତା'ପରେ ଖଡ଼ା ଥୋଡ଼ ବଡ଼ି । (ପାଞ୍ଚ)
ତା'ପରେ ଥୋଡ଼ ଖଡ଼ା ବଡ଼ି । (ଛଅ)

ପ୍ରକୃତରେ ଖଡ଼ା, ବଡ଼ି ପଡ଼ି ମଞ୍ଜା ତରକାରିଟିଏ ହୋଇଥିଲା । ସେ ତାକୁ ଓଲଟାଇ ପାଲଟାଇ ଛଅ ପ୍ରକାର ଗଣିଦେଲା । ଓଲୁ ସାଙ୍ଗଯାକ ବାହାପିଆ କଥାକୁ ଧରିପାରିଲେ ନାହିଁ ।

ନ ହେଲେ କି ବାହାପିଆ ।



# ମାତରଃ ପିତରଃ କ୍ୱାଗୁ

ବାପା ସଂସ୍କୃତ ପଢ଼ିବାକୁ ପୁଅକୁ ପଠାଇଦେଲେ । ପୁଅ ବାରବର୍ଷ ବିଦେଶରେ ରହି ସଂସ୍କୃତ ପଢ଼ିଲା । ସଂସ୍କୃତରେ କଥାବାର୍ତ୍ତା କରିବାକୁ ତାକୁ ଭାରି ଭଲ ଲାଗେ । ସେ ପାଠ ଶେଷ କରି ଘରକୁ ଫେରିଲା । ଦିନେ ବଡ଼ି ସକାଳୁ ମା' ଅଗଣା ଓଳାଉଛନ୍ତି, ପୁଅ ଶେଯରୁ ଉଠି ବାପାଙ୍କୁ କାହିଁକି ଖୋଜିଲା । ନ ପାଇବାରୁ ମା'ଙ୍କୁ ପଚାରିଲା "ମାତରଃ ପିତରଃ କ୍ୱାଗୁ ?" ଅର୍ଥାତ୍ ବାପା କୁଆଡ଼େ ଗଲେ ? ମା', ତ ପାଠ ପଢ଼ି ନାହାଁନ୍ତି, ସେ ସଂସ୍କୃତ ବୁଝିବେ କିପରି ? ମା' ବୁଝିଲେ – ପୁଅ କହୁଚି – ମା, କୁଆଗୁହ ଖାଇବୁ । ମା' ଏହା ବୁଝି ରାଗରେ ଗରଗର ହେଲେ । ପୁଅ ମା' ଠାରୁ ଉତ୍ତର ନ ପାଇ ଗରଗର ହେବାର ଦେଖି ଭାବିଲା – ମା' ବୋଧହୁଏ 'ପିତରଃ' ଅର୍ଥାତ୍ ପିତାମାନେ ଶୁଣି ଭାବିଛନ୍ତି ତେବେ ମୋର କ'ଣ ସ୍ୱାମୀ ବହୁତ ? ପୁଅ ଏହି ସନ୍ଦେହ ମା'ଙ୍କୁ ବୁଝାଇ ଦେବାକୁ କହିଲା – ନହି ନହି ମାତଃ ସମ୍ମାନାର୍ଥେ ବହୁ ବଚନଂ ।" ଏଥିରେ ମାଆଙ୍କର ସନ୍ଦେହ ଯିବ କ'ଣ ଆହୁରି ବଢ଼ିଲା । ସେ ଏହି ଦ୍ୱିତୀୟ କଥାରେ ବହୁ ବଚନ ଶୁଣି ବୁଝିଲେ – ତେବେ ବୋହୂ କହିଦେବାରୁ ପୁଅ ଏପରି କହୁଛି । ପୁଅର କିଆଁ ଦୋଷ ହେବ ? ବୋହୂ ତ ଏସବୁ ଅନର୍ଥର ମୂଳ, ଏହି କଥା ସ୍ଥିରକରି ବୋହୂକୁ ନିର୍ଦ୍ଧୂମ୍ ତୁହାଡ଼େ ଦେଲେ । ପୁଅ ତାହା ଶୁଣି କାବ୍‌ବା ହେଲା । ପରେ ପୁଣି ସେ ସଂସ୍କୃତ କଥାତକ ଓଡ଼ିଆରେ ବୁଝାଇଦେବାରେ ମାଆଙ୍କର ଶାନ୍ତି ହେଲା । ନ ହେଲେ ଶାଶୂ ବୋହୂଙ୍କର ଆଉ ମୁହଁ ଚୁହାଁଚୁହିଁ ହୋଇ ନ ଥା'ନ୍ତା ।

ଯୋଗ୍ୟ ପୁଅଙ୍କୁ ସଂସ୍କୃତରେ କଥାବାର୍ତ୍ତା କରିବାକୁ ଆଉ ପାତ୍ର ମିଳୁ ନ ଥିଲା ।



# ଛାମୁଙ୍କର ତେବେ ବିଲେଇଟିଏ ଯୋଗାଣ ହୋଇଛି

ଜଣେ ବୈଦ୍ୟ ଥିଲେ । ସେ ବଡ଼ ବୁଦ୍ଧିମାନ୍ ଏବଂ ଚତୁର । ନାଡ଼ୀ ଲକ୍ଷଣ, ମୂତ୍ର ଲକ୍ଷଣ ତାଙ୍କୁ ଭଲ ଜଣାଥିଲା । କେହି ରୋଗୀ ତାଙ୍କ ପାଖକୁ ଗଲେ ଯେ ନାଡ଼ୀ ଦେଖି, ମୂତ୍ର ପରୀକ୍ଷା କରି ଚାଲିଚଳଣି ବୁଝି ଔଷଧ ଦିଅନ୍ତି । ଏହି ହେତୁରୁ ଔଷଧ ଠିକ୍ ଲାଗିଯାଏ ।

ରାଜବୈଦ୍ୟଙ୍କର ଗୋଟିଏ ମାତ୍ର ପୁଅ ଥିଲା । ସେଇଟି ନିର୍ବୁଦ୍ଧିଆ । ବାପା ତାକୁ ଯୋଗ୍ୟ କରିବାକୁ ତା' ପଛରେ ବହୁତ ଲାଗିଲେ । ଖାଲି ଶୁଆ ପରି ଗୁଡ଼େ ମୁଖସ୍ଥ କଲା; ମାତ୍ର ବୁଦ୍ଧି ଅକଲ ନ ଥିବାରୁ ସେ ପଢ଼ା କଢ଼ାକର କାମରେ ଲାଗିଲା ନାହିଁ । ବାପା ଏହା ଦେଖି ଦିନେ ପୁଅକୁ ପାଖରେ ବସାଇ କହିଲେ – ଆରେ, ଖାଲି ପାଠରେ କାମ ହୁଏ ନାହିଁ; ତା' ସାଙ୍ଗକୁ ଶାଠ ଦରକାର । ଶାଠରେ କିମିତି କାମ ହୁଏ, ଶୁଣ ।

ବାପା କହିଲେ – ଥରେ କ'ଣ ହେଲାନା – ଥରେ ରଜା ପଡ଼ିଲେ ବେମାରରେ । ମୁଁ ନାଡ଼ୀ ଦେଖି ଔଷଧ ଦେଲି; ମାତ୍ର ଫଳ କିଛି ହେଲାନାହିଁ, ଏଥିରେ ରଜାଙ୍କର ମନ ମୋ ଉପରେ ଟିକିଏ ଭାଙ୍ଗିଗଲା । ତାଙ୍କର ଆଉ ମୋ ଉପରେ ବିଶ୍ୱାସ ରହିଲା ନାହିଁ । ଦିନେ ମୋତେ କହିଲେ – କେତେ ତ ଔଷଧ ଦେଲ କିଛି ତ ଫଳ ହେଲାନାହିଁ, ତେବେ ସେଥିରୁ ଗୁଡ଼େ ଆଉ କାହିଁକି ଖାଇବି ?

ଏଥିରେ ମୋ ମନ ଟିକିଏ ଦବି ଗଲା । ଭାବିଲି – ଠିକ୍ ଔଷଧ ତ ଦିଆଯାଉଛି; ଧରୁନାହିଁ କାହିଁକି ? ନିଶ୍ଚେ କିଛି ଅପଥ୍ୟ ହେଉଛି । ଏହିପରି ଭାବି ମୁଁ ଚାରିଆଡ଼କୁ ଚାହୁଁଥାଏ । ଚାହୁଁ ଚାହୁଁ ଦେଖିଲି – ରଜାଙ୍କର ପଲଙ୍କ ଉପରେ ଗୋଟେ ମୁଢ଼ି ପଡ଼ିଛି । ତାହା ଦେଖି ସର୍ବଜ୍ଞ ପରି କହିଲି – ମଣିମା ବୋଧହୁଏ ମୁଢ଼ି ଯୋଗାଣ କରିଛନ୍ତି । ନ ହେଲେ ଔଷଧ କାଟୁ ନ କରନ୍ତା କାହିଁକି ? ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ – ମୁଁ ମୁଢ଼ି ଖାଇବା କଥା ତୁମେ ଜାଣିଲ କିପରି ? ମୁଁ କହିଲି ଆଜ୍ଞା ମୁଁ ବୈଦ୍ୟ, ନାଡ଼ୀ ତ ଡାକ ପକାଇବ, ଜାଣିବା କଥା କଷ୍ଟ କଅଣ ?

ରଜା ପ୍ରକୃତରେ ମୁଢ଼ି ଖାଇଥିଲେ । ମୁଁ କିଛି ନ ଦେଖି ନ ପଚାରି କହିଦେବାରେ ତାଙ୍କର ମୋ ଉପରେ ଦେବତା – ବିଶ୍ୱାସ ହୋଇଗଲା । ତା’ ପରେ ତ ପାନଟିଏ ଔଷଧ ଦେଇଛି, ସେତିକିରେ ସେ ତା’ ଆରଦିନକୁ ଝାଡ଼ିଝୁଡ଼ି ହୋଇ ବସିଲେ । ଔଷଧରେ ଫଳ ହଉ କି ନ ହଉ, ରୋଗୀର ଯେତେ ବିଶ୍ୱାସ ଆସିଯିବ ତେବେ ବୈଦ୍ୟର ଜିତାପଟ । ବୁଝିଲୁଟିକି ? ସେତକ ଶାଠ ଲଗାଇଲି ବୋଲି ସିନା ଜିଣିଲି । ନ ହେଲେ ଖାଲି ପାଠରେ କ’ଣ ହୋଇଥା’ନ୍ତା ?

ପୁଏ ଏକଥା ଭଲ କରି ମନେ ରଖିଲା । ବାପା ମରିଗଲା ପରେ ସେ ରାଜବୈଦ୍ୟ ହେଲା । ଥରେ ରଜା ବେମାର ପଡ଼ିଲେ, ବୈଦ୍ୟ ଚିକିତ୍ସା କଲେ; କିନ୍ତୁ କିଛି ଫଳ ହେଲାନାହିଁ । ରଜା ବିରକ୍ତ ହୋଇ ଆଉ ଔଷଧ ଖାଇଲେ ନାହିଁ ।

ଏ ଘଟଣାରେ ବୈଦ୍ୟ ବାପାଙ୍କ କଥା ମନରେ ପକାଇ ଚାରିଆଡ଼କୁ ଚାହିଁଲେ । ଦେଖିଲେ ଯେ ରଜାଙ୍କ ପଲଙ୍କ ତଳେ ବିରାଡ଼ିଟିଏ ଶୋଇଛି । ବୈଦ୍ୟଙ୍କର ଆଉ ସନ୍ଦେହ ରହିଲା ନାହିଁ । ସେ ସ୍ଥିର କଲେ ରଜା ନିଶ୍ଚୟ ବିରାଡ଼ିଟିଏ ଖାଇଛନ୍ତି । ନ ହେଲେ ରୋଗ ନ ଯା’ନ୍ତା କାହିଁକି ? ଏହି କଥା ସ୍ଥିର କରି କହିଲେ ଛାମୁ ତ ଅପଥ୍ୟ କରୁଛନ୍ତି, ନ ହେଲେ ରୋଗ ନ ଯା’ନ୍ତା କାହିଁକି ?

ରଜା କହିଲେ ଆମେ ତ ଅପଥ୍ୟ କିଛି କରିନାହୁଁ । ବୈଦ୍ୟ କହିଲେ – ଆଜ୍ଞା, ଆଉ ଲୁଚାଇଲେ କ’ଣ ହେବ ? ଛାମୁ ନିଶ୍ଚେ ବିଲେଇଟି ଯୋଗାଣ କରିଛନ୍ତି ।

ରଜା ଏହା ଶୁଣି ରାଗରେ ଜଳିଉଠି କହିଲେ କିଏ ଅଛରେ, ଏ ବୈଦ୍ୟକୁ ତଣ୍ଟିଆ ଦେଇ ବାହାର କର । ସାଙ୍ଗେ ସାଙ୍ଗେ ଦୁଇଟା ପାଇକ ତଣ୍ଟିଆ ଦେଇ ଦୁଆର ପାରି କରିଦେଲେ ।

ପୁଅ ତ ଶାଠରେ ଚିକିତ୍ସା କରୁଥିଲେ । ଫଳରେ ଯା ନ ହୋଇ ଆଉ ହୁଅନ୍ତା କଅଣ ?



# ଦବୁ, ମାଗିବୁ ନାହିଁ

ଜଣେ ସାଉକାର ଥିଲା । ତାର ଅଚଳାଚଳ ସମ୍ପତ୍ତି । ସେ କ୍ରମେ କ୍ରମେ ବୁଢ଼ା ହୋଇଆସିଲା । ତା'ର ଗୋଟିଏ ମାତ୍ର ପୁଅ । ବୁଢ଼ା ମଲାବେଳକୁ ପୁଅକୁ କହିଲା –

"ଦବୁ, ମାଗିବୁ ନାହିଁ,
ଅଧା ସମୁଦ୍ରରେ ପାଣି ପିଇବୁ,
ବାଡ଼ିରେ ହାଟ, ଦୁଆରେ ଦାନ୍ତୀକବାଟ ବସାଇବୁ,
ବୁଦ୍ଧି ନ ଦିଶିଲେ ତିନି ମୁଣ୍ଡିଆଙ୍କୁ ପଚାରିବୁ ।"

ବାପ ମଲା ପରେ ପୁଅ ବାପ କଥା ଗୋଟି ଗୋଟି କରି ପାଳିଲା । ବାପା ତ କହିଥିଲା ଦବୁ, ମାଗିବୁ ନାହିଁ; ତେଣୁ ପୁଅ ଯାହାକୁ ଯାହା ଋଣ କରଜ ଦେଲା, ତାହା ଆଉ ମାଗିଲା ନାହିଁ । ଏପରି ହବାରୁ ହଜାର ହଜାର ଟଙ୍କା ବୁଡ଼ିଗଲା ।

ଅଧା ସମୁଦ୍ରରେ ତ ପୁଣି ପାଣି ପିଇବ । ଏଥିଲାଗି ହଜାର ହଜାର ଟଙ୍କା ଖରଚ କରି ସମୁଦ୍ର ଭିତରେ ଗୋଟେ କୋଠା ତୋଳାଇଲା । ସେ କୋଠାକୁ ଯିବା ଆସିବା କରିବାକୁ ପୁଣି ଗୁଡ଼ାଏ ଖରଚ କରି ଗୋଟେ ରାସ୍ତା ତିଆରି କଲା । ନିତି ସମୁଦ୍ର ଭିତରକୁ ଯାଇ ପାଣି ପିଇଲା । ଏଥିରେ ମଧ ଗୁଡ଼ାଏ ସମ୍ପତ୍ତି ଉଡ଼ିଗଲା ।

ତା' ପରେ ବାଡ଼ିରେ ହାଟ, ଦୁଆରେ ଦାନ୍ତୀକବାଟ ବସାଇବାର କଥା । ତେଣେ ବାଡ଼ିରେ ଯେତେ ଫୁଲ ଫଳଗଛ ଥିଲା, ତାହା ସବୁ ହାଣିମାରି ସଫା କରି ହାଟଟିଏ ବସାଇଲା । ଏପରି କରିବାରେ ବାଡ଼ିରୁ

ଯାହା ପନିପରିବା ଆଦାୟ ହେଉଥିଲା ସେସବୁ ଗଲା । ଆଉ ଖଡ଼ା ପତ୍ରଟାଏ ରହିଲା ନାହିଁ ।

ଦୁଆରେ ଦାନ୍ତୀକବାଟ ଲଗାଇବାକୁ ଗୁଡ଼ିଏ ହାତୀଦାନ୍ତ କିଣାହେଲା । ପୁଣି ଭଲ ଭଲ କାରିଗର ଲଗାଇ କମକୁଟ କରି ଦୁଇଟି କବାଟ କରି ଲଗାଇଲା । ବାକି ଯାହା ସମ୍ପତ୍ତି ଥିଲା, ଏଥିରେ ସବୁ ସରିଗଲା । ପଛକୁ ଖାଇବାକୁ ଦାନା, ପିନ୍ଧିବାକୁ କନା ମିଳିଲା ନାହିଁ । କୋଟିପତିର ପୁଅ, ତା'ର ପୁଣି ଏପରି ଅବସ୍ଥା ହେଲା । ସେ ବଡ଼ ଭାଳେଣିରେ ପଡ଼ିଲା; ତାକୁ କିଛି ବୁଦ୍ଧି ଦିଶିଲା ନାହିଁ । ବୁଦ୍ଧି ନ ଦିଶିଲେ ବାପାଙ୍କ କଥା ଅନୁସାରେ ତିନିମୁଣ୍ଡିଆକୁ ପଚାରିବାର କଥା । ତେଣୁ ସେ ତିନିମୁଣ୍ଡିଆକୁ ଖୋଜି ବୁଲିଲା । ତିନିମୁଣ୍ଡିଆ କିଏ ଅଛି ଯେ, ସେ ପାଇବ ? ଖୋଜି ଖୋଜି ନିରସ୍ତ ହୋଇ ଜଣେ ବନ୍ଧୁଙ୍କ ପାଖକୁ ଯାଇ ସବୁକଥା କହିଲା । ସେ ଲୋକ ପୁରୁଖା ଲୋକ ଏବଂ ବୁଦ୍ଧିମାନ । ସେ ସବୁ ଶୁଣି କହିଲେ, ବାପା ଭଲ କଥା କହିଥିଲେ । ତମେ ବୁଝି ନ ପାରି ବାୟା ପରି ଗୁଡ଼େ ଭୁଲ କାମ କରି ପକାଇଲ, ତେଣୁ ଦୁଃଖ ପାଇଲ । ସାଉକାର ପୁଅ କହିଲା, ସେ ଯାହା ହବାର ତ ହେଲାଣି; ଏବେ ମତେ ସବୁ କଥା ବୁଝାଇ ଦିଅ ।

ବନ୍ଧୁ କହିଲେ – ଦେବୁ ମାଗିବୁ ନାହିଁ ଏହାର ଅର୍ଥ ଏହି ଯେ ଯାହାକୁ ଯେତେ ଟଙ୍କା ଦେବ, ତା'ଠାରୁ ତା ଅପେକ୍ଷା ଅଧିକ ଟଙ୍କାର ସୁନାରୁପା ରଖିଥିଲେ ଆଉ ମାଗିବା ଦରକାର ନାହିଁ, ଲୋକସାନ ମୋଟେ ନାହିଁ ।

ଅଧା ସମୁଦ୍ରରେ ପାଣି ପିଇବା ଅର୍ଥ – ଖାଇବା ବେଳେ ମଝିରେ ପାଣି ପିଇବ, ତେବେ ଖାଇବା ଜିନିଷ ସହଜରେ ହଜମ ହୋଇଯିବ ।

ବାଡ଼ିରେ ହାଟ ବସାଇବାର ଅର୍ଥ – ବାଡ଼ିରେ ସକଳ ପ୍ରକାର ପନିପରିବା କରିବ । ତେବେ ତୁମର ହାଟକୁ ଯିବା ଦରକାର ହବ ନାହିଁ, କି ତୁମ ପଇସା ପର ଖାଇବେ ନାହିଁ ।

ଦୁଆରେ ଦାନ୍ତୀକବାଟ ଲଗାଇବା ଅର୍ଥ ଦୁଆରେ କୁକୁରଟିଏ ବାନ୍ଧି ରଖିଲେ ଘରେ ଚୋର ଡକାୟତ ପଶିପାରିବେ ନାହିଁ ।

ବୁଦ୍ଧି ନ ଦିଶିଲେ ତିନି ମୁଣ୍ଡିଆଙ୍କୁ ପଚାରିବ ଅର୍ଥ – ଲୋକ ବୁଢ଼ା ହୋଇଗଲେ ସେ ଆଉ ମୁଣ୍ଡ ଟେକି ବସିପାରେ ନାହିଁ । ସବୁବେଳେ ଉଗୁଡ଼ି ହୋଇ ବସି ଦି'ଆଣ୍ଠୁ ସନ୍ଧିରେ ମୁଣ୍ଡଟି ରଖି ବସେ । ଆଣ୍ଠୁ ଯୋଡ଼ିକ ମୁଣ୍ଡ ପରି ମୁଣ୍ଡ ତ ମୁଣ୍ଡ, ଏପରି ତିନି ମୁଣ୍ଡ ହେଲା । ଏଭଳି ବୁଢ଼ା ଲୋକଙ୍କୁ ସଂସାରର ଅନେକ କଥା ଜଣାଥାଏ । ତାଙ୍କୁ ପଚାରିଲେ ସେ ଭଲ ବାଟ ବତାଇ ଦିଅନ୍ତି । ଆଉ ବିପଦରେ ପଡ଼ିବାକୁ ହୁଏ ନାହିଁ ।

ସାଉକାର ପୁଅ ଏସବୁ କଥା ଶୁଣି ମୁଣ୍ଡରେ ହାତ ବାଡ଼େଇ କହିଲା – ମୁଁ ଚଣ୍ଡାଳ ନ ବୁଝି କି ଭୁଲ କଲି ? ଏବେ କରିବି କଅଣ ?

ଭଦ୍ରଲୋକ କହିଲେ – ସେ ଯାହା ହବାର ହେଲାଣି; ଆଉ ଭାବିକରି କିଛି ଲାଭ ନାହିଁ । ଏଣିକି ଏପରି ଚଳ, ପୁଣି ଦଶା ଫେରିଯିବ ।

ସାଉକାର ପୁଅ ସେହିଦିନ ଠାରୁ ସେହିପରି ଚଳିବାରୁ ଅଳ୍ପଦିନେ ପୁଣି ତା'ର ଦଶା ଫେରିଗଲା, ସେ ସୁଖରେ ଚଳିଲା ।



# ମିଠାଇ ଖିଆ

ଜଣେ ବାବୁ ଥିଲେ । ତାଙ୍କ ପାଇଁ ରୋଜ ତିନି ପ୍ରକାର ପାଞ୍ଚପ୍ରକାର ଜଳଖିଆ ତିଆରି ହୁଏ । ସେ ସବୁତକ ଖାଆନ୍ତି, କାହାକୁ କଣିକାଏ ଦିଅନ୍ତି ନାହିଁ । ତାଙ୍କର ତିନୋଟି ଚାକର ଥିଲେ । ତିନିହେଁ ଘରର ସବୁ କାମଦାମ କରନ୍ତି, ବାବୁଙ୍କ ଜଳଖିଆ କଥା ମଧ୍ୟ ବୁଝନ୍ତି । ଜଳଖିଆ ଦୁଧଘିଅ, ସରଶାକରରେ ତିଆରି । ଭଲ ଜିନିଷରେ କାହାର ଲୋଭ ନ ଥାଏ । ଚାକରମାନେ ରୋଜ ଜଳଖିଆ ହାତରେ କାରବାର କରନ୍ତି । ସମସ୍ତଙ୍କର ସେଥିରେ ଆଶା, ମାତ୍ର "ଗହମ ଗୋଟି ଗଣିତା, ରୋଟି ଚୋରାଉଛି କିଏ ?" ଚାକରଙ୍କ ଜିଭରୁ ଲାଳ ବହେ ସିନା ମାତ୍ର ଫଳରେ କିଛି ହୁଏ ନାହିଁ । ହନ୍ତସନ୍ତ ହୋଇ ରହନ୍ତି । ଦିନେ ତିନିହେଁ ବସି ବିଚାରକଲେ – ଭାଇ । ଏସବୁ ଜଳଖିଆତକ ସବୁ ପକାଉଛି, ଦିନେ ଖଣ୍ଡେ ହେଲେ ଦଉନାହିଁ । ଚାଲ, ଆମ କାମ ଆମେ କରିବା । ଜଳଖିଆ ତ ଗୋଟେ ଶିକାରେ ରହୁଛି । ତିନିହେଁ କ'ଣ କଲେନା – ଗୋଟେ ନିଶୁଣି ପକାଇ ଜଣେ ଉପରକୁ ଗଲା, ଜଣେ ନିଶୁଣି ମଝିରେ ଠିଆ ହେଲା, ଆଉ ଜଣେ ଚିତ୍ ହୋଇ ଶୋଇ ରହିଲା । ଉପର ଲୋକ ମୁଠା ମୁଠା କରି ଜଳିଖିଆ ମଝି ଲୋକକୁ ଦିଏ । ମଝି ଲୋକ ତାକୁ ନେଇ ଚିତ୍‌ହୋଇ ଶୋଇଥିବା ଲୋକର ପାଟିରେ ଦିଏ । ପ୍ରଥମ ଦିନ ଏହିପରି ଜଳଖିଆତକ ସବୁ ଶେଷ କଲେ । ବାବୁ ଖାଇଲା ବେଳକୁ ଜଳିଖିଆ ନାହିଁ । ବାବୁ ରାଗିମାଗି ଚାକରକୁ ଧମକାଇଲେ; ଚାକର ଜମା ମାନିଲେ ନାହିଁ । ଶେଷକୁ ଲୋକନାଥଙ୍କ ପ୍ରସାଦ ଧରି ନିୟମ କଲେ । ଉପର ଜଣକ କହିଲା – ଆଜ୍ଞା, ନିୟମ କରି କହୁଛି – ମୁଁ ଜଳଖିଆ ଖାଇନାହିଁ । ମଝି ଜଣକ

ସେହିପରି ନିୟମ କରି କହିଲା – ଆଜ୍ଞା, ମୁଁ ଜଳଖିଆ ଦେଖି ନାହିଁ କି ଖାଇନାହିଁ । ତଳ ଜଣକ ସେହିପରି ନିୟମ କରି କହିଲା – ଆଜ୍ଞା, ମୁଁ ଜଳଖିଆ ଦେଖିନାହିଁ, କି ଛୁଇଁ ନାହିଁ । ଚାକରଯାକ ସତ କଥା କହିଛନ୍ତି । ସୁତରାଂ ଲୋକନାଥ ପ୍ରସାଦକୁ କାହିଁକି ଭୟ କରିବେ ? ବାବୁ ଦେଖିଲେ ଲୋକନାଥ ପ୍ରସାଦ ତ ସହଜ କଥା ନୁହେଁ, ତାକୁ ଧରି ନିୟମ କରିବା କଅଣ ସହଜ କଥା ? ବାବୁଙ୍କର ବିଶ୍ୱାସ ହେଲା – ଚାକର କେବେ ଜଳଖିଆ ଖାଇନାହାଁନ୍ତି । ଖାଇଥିଲେ ଖାଇଥିବ ବିରାଡ଼ି, କିମ୍ୱା ଅନ୍ୟ କେହି ଲୋକ ।

ସେଦିନ ଏହିପରି ଚଳିଯିବାରୁ ବାନରମାନେ ରୋଜ୍ ରୋଜ୍ ସେହିପରି ନ କରି ତିନି ଦିନରେ, ପାଞ୍ଚ ଦିନରେ ଥରେ ଏହିପରି ଜଳଖିଆ ଖାଇଲେ । ଅତି ବଡ଼ ହୋଇ ନିୟମ କରିବାକୁ ପଡ଼ିବ, ପଡ଼ିଲେ ଭୟ କିଛି ନାହିଁ । କାହିଁକିନା ସେ ଯୁ ଖଞ୍ଜାରେ ଖାଉଛନ୍ତି, ସେଥିରେ ତ ମିଛ କହୁନାହାନ୍ତି । ପ୍ରକୃତରେ ଉପରବାଲା ଖାଇନାହିଁ, ମଝିବାଲା ଖାଇନାହିଁ ବା ଦେଖିନାହିଁ, ତଳବାଲା ତ ଆଖି ମୁଦି ପାଟିରେ ଗଳାଇଦେବାରେ ଖାଉଛି, ସେ ବା ଦେଖିଲା କେତେବେଳେ; ଛୁଇଁଲା କେତେବେଳେ ? ସମସ୍ତେ ତ ଏହିପରି ସତକଥା କହୁଛନ୍ତି । ଆଉ ଭୟ କଅଣ ? ଚାକରମାନେ କେବଳ ପାଳିକରି ତଳ ଉପର ବଦଳାଉଥାଆନ୍ତି । ତା' ନ ହେଲେ ଖାଇବା ଭାଗ ସମସ୍ତଙ୍କୁ ମିଳିବ ନାହିଁ ।

ବାବୁ ନିୟମରେ ବୋକା ବନିଲା । ଚାକରମାନେ ପାଳି ଅନୁସାରେ ଜଳଖିଆ ଆଦାୟ କଲେ । ଆଛା ହେଲା, ଯିମିତି ଦିଅଁକୁ ସିମିତି ପୂଜା । ନ ହେଲେ କ'ଣ ସେ ପେଟକାବୁରା ବାବୁଠାରୁ କଣିକାଏ ମିଳିଥା'ନ୍ତା ?



# ଆରେ, ଗାଧାକା ମେମ୍ ସାହେବ ଲାଓ

ଜଣେ ବିଲାତୀ ସାହେବ ଏ ଦେଶରେ ଚାକିରି କରୁଥିଲେ । ଏଠାରେ କିଛିଦିନ ରହିବାପରେ ଟିକିଏ ହିନ୍ଦୀ କହି ଶିଖିଲେ । ତାଙ୍କ ପାଖରେ ଜଣେ ହିନ୍ଦୁସ୍ଥାନୀ ଲୋକ ଅର୍ଦ୍ଦଳି ଥାଏ । ସେ ମୋଟେ ଇଂରାଜୀ ଜାଣେ ନାହିଁ । ସାହେବ ଖଣ୍ଡିଆ ଖଣ୍ଡିଆ ହିନ୍ଦୀ କହି ଠାରିଠୁରି ତା' ସଙ୍ଗେ କଥାବାର୍ତ୍ତା କରନ୍ତି । ଦିନେ ସାହେବଙ୍କର ଗୋଟିଏ ମାଇ ଗଧ ଦରକାର ହେଲା । ମାଇ ଗଧ ପାଇଁ ତ ଅର୍ଦ୍ଦଳିକୁ ବରାଦ ଦେବାକୁ ହେବ । ମୋର, ଗୋଟେ ମାଇ ଗଧ ଦରକାର ଏକଥାଟା ସାହେବ ହିନ୍ଦୀରେ କହି ଜାଣିଲେ ନାହିଁ । ଯାହା କହିଲେ ସେଥିରେ ଅର୍ଦ୍ଦଳି ବୁଝିଲା ସାହେବଙ୍କର ଗୋଟେ ଗଧ ଦରକାର । ସୁତରାଂ ସେ ଗୋଟେ ଗଧ ଆଣି ସାହେବଙ୍କ ପାଖେ ହାଜର କଲା । ସାହେବ ଦେଖିଲେ – ଗଧଟା ମାଇ ନୁହେଁ ଅଣ୍ଡିରା । ତେଣୁ ଅର୍ଦ୍ଦଳିକି କହିଲେ – ଆରେ ହାମାରା ମାଫିକ ଗାଧା ନେହିଁ । ଏହାର ଅର୍ଥ – ମୋ ପରି ଗଧ ନାହିଁ । ଏଥିରୁ ମାଇ ଗଧ ବୋଲି କିଏ ବୁଝିବ । ଅର୍ଦ୍ଦଳି ସାହେବ କଥା ବୁଝି ନ ପାରି ପୁଣି ପଚାରିଲେ – ତେବେ କିପରି ଗଧ ? ଆରେ ମେମ୍ ସାହେବକା ସରିକ୍ ଗାଧା ଲାଓ । ଏଥିରୁ ଏବେ ମାଇ ଗଧ ବୋଲି କିଏ ବୁଝିବ ? ଏହାର ଅର୍ଥ – ମେମ୍ ସାହେବଙ୍କ ପରି ଗଧ ଆଣ । ତଥାପି ଅର୍ଦ୍ଦଳି ବୁଝି ନ ପାରିବାରୁ ସାହେବ ଶେଷକୁ କହିଲେ – ଆରେ ଗାଧିକା ମେମ୍ ସାହେବ ଲାଓ । ସେଥିରୁ ଅବା ମାଇ ଗଧ କିପରି ବୁଝାଯିବ ? ସାହେବଙ୍କର ସିନା, ମେମ୍ ସାହେବ, ଆଉ ଗଧର ଗୋଟେ ମେମ୍ ସାହେବ କଅଣ ? ବିଚରା ଅର୍ଦ୍ଦଳି କିଛି ବାଟ ନ ପାଇ ଅନୁମାନ କରି ଗୋଟେ ମାଇ ଗଧ ଆଣି ଦେବାରେ ସାହେବ ବଡ଼ ଖୁସିହେଲେ ।

ଅର୍ଦ୍ଦଳି ସେହିଦିନ ବୁଝିଲା – ଗାଧିକା ମେମ୍ ସାହେବ କହିଲେ 'ମାଇ ଗଧ' ।



# କଖାରୁ ଚୋରି

ଜଣେ ଜମିଦାର ଥିଲେ । ତାଙ୍କର ଅଭାବ କିଛି ନ ଥିଲା; କିନ୍ତୁ ପ୍ରତିଦିନ କାହାର ବାଡ଼ି ବଗିଚାରୁ ଫଳଟେ, ମୂଳଟେ ନ ଆସିଲେ, ତାଙ୍କୁ ସୁଖ ଲାଗେନାହିଁ । କିଏ ବା କାହିଁକି ରୋଜ୍ ଫଳମୂଳ ଯାଚିକରି ଦବ ? କିନ୍ତୁ ନ ହେଲେ ତ ନ ହୁଏ । ସେଥିପାଇଁ ବେଳେ ବେଳେ ଚୋରି କରିବାକୁ ମଧ୍ୟ ପଡ଼େ । ନିଜେ ତ ଚୋରି କରିପାରିବେ ନାହିଁ । ତେଣୁ ପାଖରେ ଯେ ଜଣେ ଦି'ଜଣ ଥା'ନ୍ତି, ତାଙ୍କୁ ବରଗି ଦିଅନ୍ତି । ଦିନେ କଅଣ ହେଇଛିନା, ଜଣେ ଖାତକ ନିଜର ଦେଣାପାଉଣା ତୁଟାଇବାକୁ ଜମିଦାରଙ୍କ ପାଖକୁ ଯାଇଥିଲେ । ତାଙ୍କର କଥାବାର୍ତ୍ତା ସରୁ ସରୁ ରାତି ହେଲା । ସେଦିନ ଘରକୁ ଯାଇ ନ ପାରି ଜମିଦାରଙ୍କ କଚିରି ଘରେ ରହିଲେ । ସେଦିନ ଜମିଦାର କୁଆଡୁ ହେଲେ ଫଳମୂଳ କିଛି ପାଇ ନ ଥିଲେ, କି କାହାକୁ ବରଗି ଦେବାକୁ କେହି ପାଖରେ ନ ଥିଲେ । ତେଣୁ ବାଧ୍ୟ ହୋଇ ସେ ଖାତକଙ୍କୁ କହିଲେ – ତୁମେ ଗୋଟେ କଖାରୁ କେଉଁଠୁ ହେଲେ ଆଣନ୍ତ ? ସେ ଏହାଶୁଣି ତଳକୁ ଉପରକୁ ଚାହିଁ କହିଲେ – ମୁଁ ଏ ରାତିରେ କଖାରୁଟେ କାହୁଁ ଆଣିବି ? ଜମିଦାର କହିଲେ – ଗାଁ'ଟା ଯାକରେ କଖାରୁ କାହା ପିଢ଼ାରେ ନାହିଁ ? ସେ କହିଲେ – ମୁଁ ପର ପିଢ଼ାରୁ କଖାରୁ କିପରି ଆଣିବି ? ପଛକୁ ଚୋରିରେ ଧରାପଡ଼ିବି ସିନା ? ଜମିଦାର କହିଲେ – ତୁନି କରି ତ ଘେନି ଆସିବ, ଧରାକିଆଁ ପଡ଼ିବ ? କିଛି ଭୟ ନାହିଁ, କାହାକୁ ଡରିବ ନାହିଁ । ଯୁଉଁଠି ଇଚ୍ଛା ସିଠଉଁ ଆଣ । ମୁଁ ଅଛି, ଭୟ ନାହିଁ । ଖାତକ ଦେଖିଲା ଯେ କଖାରୁ ନ ଆଣିଲେ ଯେ ମତେ ଛାଡ଼ିବ ନାହିଁ । କୁଠଉଁ ଆଣିବି ଭାବୁ ଭାବୁ ମନେ ପଡ଼ିଲା – ମାଲିକ ତ କହିଛି – ଯୁଠଉଁ ଇଚ୍ଛା ସିଠଉଁ ଆଣ, ଭୟନାହିଁ । ତେବେ କାହାକୁ କିଛି ନ କହି ସେଇ

ଚାଳରୁ ଦି'ଟା ଆଣି ହାବୁଡ଼େଇ ଦେଲେ ହେଲା । ଏଇ କଥା ସ୍ଥିର କରି ସେଇ ଅନ୍ଧାର ରାତିରେ ଚୁପ୍‌ଚାପ୍ ଯାଇ ଗୁହାଳ ଚାଳରୁ ଦି'ଟା କଖାରୁ ଆଣି ଜମିଦାରଙ୍କ ପାଖେ ଥୋଇଦେଲା । ଜମିଦାରେ କଖାରୁ ଦେଖି ମହାଖୁସି । ସେଇ ରାତିରେ ଦେଣା ପାଉଣା ହିସାବ ଯାହା ବାକିଥିଲା, ସବୁ ସୁରୁଖୁରୁରେ ତୁଟିଗଲା । ଖାଇପିଇ ସମସ୍ତେ ଶୋଇଲେ । ରାତି ପାହିଲା, ସମସ୍ତେ ଉଠିଲେ । ଖମାରି ଆସି କହିଲା – ଆଜ୍ଞା, କାଲି ରାତିରେ ଆମ ଗୁହାଳ ଚାଳରୁ ଦି'ଟା କଖାରୁ କିଏ ଚୋରାଇ ନେଇଛି । ଜମିଦାର ଭାବିଲେ – ତେବେ କାଲିର କଖାରୁ କଅଣ ସେଇ କଖାରୁ କି ? ସନ୍ଦେହ ହେବାରୁ ସେ ଖାତକକୁ ଡାକି ପଚାରିଲେ – କିଓ, ତୁମେ କଅଣ କାଲି ରାତିରେ ଆମ ଗୁହାଳ ଚାଳରୁ କଖାରୁ ଆଣିଥିଲ କି ?

ସେ କହିଲା, ଆଜ୍ଞା, ଆଉ କେଉଁଠୁ ଆଣନ୍ତି ? ଆପଣ ତ କହିଲେ – ଯେଉଁଠୁ ଇଚ୍ଛା ସେଇଁଠୁ ଆଣିବାକୁ, ମୋର ଆଉ ଦୋଷ କଅଣ ?

ଜମିଦାର କହିଲେ – ବାଃ, ଭଲ କାମଟେ କଲା । ହଉ, ଏବେ ଯାଅ, ରାସ୍ତା ଧର; ବେଶ୍ କୀର୍ତ୍ତନିଆଙ୍କ ଆଡୁ ତେଲ ? ସାବାସ୍ !!



# ରାମୋ ଲକ୍ଷ୍ମଣ ମବ୍ରବୀତ୍

ଜଣେ ବାବାଜି ଥିଲେ । ସେ ପାଠ ଶାସ୍ତ୍ର କିଛି ଜାଣନ୍ତି ନାହିଁ । ଖାଲି ପଟାଟୋପ କରି ମଠ ଜମେଇ ଚଳୁଥା'ନ୍ତି ।

ଅକର୍ମା ପାଖକୁ ଅକର୍ମା ଯାଏ । କେତେକାଳ ପରେ ସେହି ଅକର୍ମା ବାବାଜି ପାଖରେ ଆଉ ଏକ ଅକର୍ମା ଜୁଟିଲା । ବାବାଜି ତାକୁ ଶିଷ୍ୟ କଲେ । ସେ ମଧ୍ୟ ପେଟ ଦାଉରେ ସେୟା ଖୋଜୁଥିଲା । ବାବାଜି ଦିନେ ଶିଷ୍ୟକୁ କହିଲେ – ଦେଖ, ବାବା । ତୁମେ ଆମର ଶିଷ୍ୟ ହେଲ, ପଢ଼ାଶୁଣା କିଛି ନ କଲେ ଗାଦିକି ନିନ୍ଦା ହେବ । ଶିଷ୍ୟ ପଢ଼ାଶୁଣା ପାଇଁ ରାଜି ହେଲା । ପାଠ ପଢ଼ାଇବାକୁ ତ ଏକମାତ୍ର ଯୋଗ୍ୟ ଲୋକ ବାବାଜି ମହାରାଜ; ବୁଝିଲା ବେଳକୁ ବାବାଜି ତ ସି ଅକ୍ଷର ବରୁଣେଇ ପର୍ବତ । ଭାଗ୍ୟକୁ ଗୋଟିଏ ପଦ ମନେ ଥିଲା । ସେ ପଦଟି ହେଉଚି –

"ରାମୋ ଲକ୍ଷ୍ମଣ ମବ୍ରବୀତ୍"

ଗୁରୁ ମହାରାଜ ସେହି ପଦଟି ସଞ୍ଜ ସକାଳେ ଶିଷ୍ୟକୁ ଘୋଷାଇଲେ । ବିଚକ୍ଷଣ ଶିଷ୍ୟ ମଧ୍ୟ ପନ୍ଦରଦିନ କାଳ ରାତିଦିନ ଲାଗି ସେ ପଦଟି ମୁଖସ୍ଥ କଲା । ଆଉ ଅଧିକ ପଢ଼ିବାକୁ ଗୁରୁଙ୍କୁ କହିଲା । ଗୁରୁ ତ ମହାପଣ୍ଡିତ । ଏକ ପଦକ ଛଡ଼ା ତାଙ୍କୁ ଆଉ କିଛି ଜଣାନାହିଁ । ତା' ପରେ ସେ ଗୋଟେ ବୁଦ୍ଧି କାଢ଼ି କହିଲେ – ଆଗ ଏ ପଦଟିର ଅର୍ଥ ବୁଝ, ତା' ପରେ ଅଧିକ ପଢ଼ିବ । ଶିଷ୍ୟ ସେଥିରେ ରାଜି ହେବାରୁ ଗୁରୁ ବୁଝାଇଲେ – ଆରେ, ରାମୋ କହିଲେ ରାମ, ଲକ୍ଷ୍ମଣ ତ ଲକ୍ଷ୍ମଣ । ମବ୍ରବୀ କହିଲେ ସୀତାଙ୍କୁ ବୁଝାଏ । ବୁଝିଲୁ ତ ? ଏବେ ତା'ର ଅର୍ଥ କହ । ଶିଷ୍ୟ କହିଲା – ନାହିଁ ମୁଁ କହିପାରିବି ନାହିଁ ।

ଗୁରୁ କହିଲେ – ତୁ ଏବେ ନିର୍ବୁଦ୍ଧିଆ । ଦେଖୁଛୁ ପରା ତଳେ ଗୋଟେ ଲାଙ୍ଗୁଡ଼ ଅଛି । ହନୁମନ୍ତର ଲାଙ୍ଗୁଡ଼ ଅଛି ବୋଲି ଜାଣିନାହୁଁ । ସେ ପୁଣି ରାମଙ୍କର ଭକ୍ତ । ରାମଙ୍କ ପାଖେ ପାଖେ ଥାଏ । ଆଉ ବୁଝିବାକୁ ବାକି କଅଣ ରହିଲା ? ଏବେ ବୁଝିଲୁ ତ ? ସେ ତ୍ର ଅର୍ଥ ହନୁମନ୍ତ ।

ଶିଷ୍ୟ ହାତଯୋଡ଼ି କହିଲା – ଆଜ୍ଞା, ଏ ତତ୍ତ୍ୱ କାହୁଁ ଜାଣିବି ? ନ ହେଲେ ଆପଣ ଗୁରୁଦେବ । ପାଠ ପଢ଼ାରେ ଶିଷ୍ୟ ଖୁସି, ଗୁରୁ ମଧ୍ୟ ଖୁସି । ଏତିକିରେ ପାଠ ଶେଷ ।



# ତା ଧିନି ଧିନି ଧିନି

ଜଣେ ରାଜା ଥିଲେ । ସେ ବଡ଼ ପରମାର୍ଥୀ । ତାଙ୍କର ଗୋଟିଏ ରାଧାକୃଷ୍ଣ ମନ୍ଦିର ଥାଏ । ରାଜା ଠାକୁରଙ୍କର ସେବାପୂଜା ଲାଗି ବହୁତ ସମ୍ପତ୍ତି ଖଞ୍ଜିଥା'ନ୍ତି । ଠାକୁରଙ୍କ ଦେହରେ ସବୁବେଳେ ବହୁତ ମଣି ମାଣିକ୍ୟ ଅଳଙ୍କାର ଖଞ୍ଜା ହୋଇଥାଏ ।

ଥରେ ପଞ୍ଚାଏ ଠକ ପରମାର୍ଥୀ ଆସି ପହଞ୍ଚିଲେ । ପଚାରିବାରୁ କହିଲେ ଆମ ମଠ ନଦିଆରେ । ରାଜା ତ ପରମାର୍ଥୀ ଦେଖିଲେ ବାଇ । ସେ ପୁଣି ନଦିଆ ବାବାଜି । ସେହି ହେତୁରୁ ତାଙ୍କ ପାଇଁ ଭଲ ଖାଇବା ଖଞ୍ଜା ହୋଇଗଲା । ବାବାଜିମାନେ ଖାଇପିଇ ମହାଆନନ୍ଦରେ ରହିଲେ । ଏବେଳା ସେବେଳା ରାଧାକୃଷ୍ଣ ମନ୍ଦିରରେ କୀର୍ତ୍ତନ କଲେ । ରାଜା କୀର୍ତ୍ତନ ଶୁଣି ମଜ୍ଜି ଯାଆନ୍ତି । ବାବାଜିଙ୍କ କୀର୍ତ୍ତନ ଭକ୍ତି ବାବାଜିଙ୍କୁ ଜଣା । ଆଉ କିଏ କାହିଁକି ଜାଣିବ ? ସେ ଖାଲି ଉଣ୍ଡୁଥା'ନ୍ତି – ଠାକୁରଙ୍କ ଘରେ କୁଠେଇଁ କି ସମ୍ପତ୍ତି ଅଛି । ଦେଖିଲେ – ଠାକୁରଙ୍କ ଦେହଦର ସମ୍ପତ୍ତି ଅଛି । ସେତକ କେମିତି ହାତରେ ପକାଇ ଛୁ କରିବେ, ବାବାଜିମାନେ କୀର୍ତ୍ତନ ସ୍ୱରରେ ଗାଇଲେ –

"ଦେଖଛ ଯେ ସବ୍ ବାଳଗୋପାଳ,
କେହୁ ନା ଥାକ୍ ବେ କାଲ୍ ସକାଳ ।"

ରାଜା ଏବଂ ଭକ୍ତମାନେ ଏହା ଶୁଣି ଭାବିଲେ – ସତ କଥା; ସତେ ଏ ସଂସାରରେ କିଏ ରହିବ କି ? କାଲିପରି ସମସ୍ତେ ଚାଲିଯିବେ । ରାଜା ଏହିପରି ତତ୍ତ୍ୱ କଥା ଭାବି ବଡ଼ ସନ୍ତୁଷ୍ଟ ହେଲେ । ବାବାଜିଙ୍କ ପ୍ରତି ତାଙ୍କର

ଭକ୍ତି ବଢ଼ିଗଲା । ସେଦିନ ବାବାଜିମାନେ ପ୍ରସାଦ ପାଇ ଠାକୁର ମନ୍ଦିରରେ ଶୋଇଲେ । ଆଉ ସମସ୍ତେ ଘରକୁ ଗଲେ । ରାତି ନିର୍ଜନ ହେବାରେ ସେମାନେ ଠାକୁର ଆଉ ଅଳଙ୍କାର ସବୁତକ ନେଇ ଚମ୍ପଟ୍ । ରାତି ପାହିବାରୁ ଦେଖିଲା ବେଳକୁ ବାବାଜି ନାହାନ୍ତି କି ଠାକୁର ନାହାନ୍ତି କି ଅଳଙ୍କାର ନାହିଁ । ଏହା ଦେଖି ରାଜାଙ୍କର ପ୍ରକୃତ ଜ୍ଞାନ ହେଲା । ଆଉ ଜ୍ଞାନହୋଇ କଅଣ ହେବ ? ଲେଡ଼ିଗୁଡ଼ କହୁଣିକି ବହିଗଲାଣି । ଆଉ ଚାରା କଅଣ ? ଖାଲି କଥା ରହିଲା – ତା ଧିନି ଧିନି ଧିନି ।



# ସାତ ଚକଟା ପୋଢୁଅ ଘଣ୍ଟା

ଜଣେ ଲୋକ ମାଛ ମାରିବାକୁ ଦିନେ ପୋଢୁଅ ଖଣ୍ଡେ ଧରି ଗୋଟେ ପାଣି ଚବକାରେ ପଶିଲା । ସେ ଚବକାରେ ପାଣି ବେଶି ନୁହେଁ, ଆଣ୍ଠୁଏ । ସେଥିରେ ଖାଲି ଗଡ଼ିଶା ଗୁଡ଼ିଏ ଥିଲେ । ଗଡ଼ିଶା ପାଣି ଉପରେ ପହଁରନ୍ତି ନାହିଁ । ସେଥିଯୋଗୁଁ ସେ ଲୋକ ଆଗ କୁଦି ଚକଟି ଚବକାଟା ଗୋଳିକଲା । ତା'ପରେ ପୋଢୁଅ ପକାଇବାରେ କେତୋଟି ଗଡ଼ିଶା ପାଇଲା । ସେତକ ବାନ୍ଧିବୁନ୍ଧି ଖୁସିରେ ଘରକୁ ଆସି ସେସବୁ କାଟିକୁଟି ରନ୍ଧାବଢ଼ା କରିବାକୁ ଭାର୍ଯ୍ୟାକୁ ଦେଲା । ଗଡ଼ିଶା ମାଛଗୁଡ଼ାକ ସାଉଁଳିଆ । ପାଉଁଶ ନ ଗୋଳାଇଲେ ପନିକିରେ କାଟି ହୁଏନାହିଁ । ଧରୁ ଧରୁ ଖସି ଯା'ନ୍ତି । ସେଇ ହେତୁରୁ ତା ଭାର୍ଯ୍ୟା ପାଉଁଶ ଗୋଳାଇ ଗୋଟି ଗୋଟି କରି ଗାଲିସି କାଟି ରଖିଲା । ଏଥିମଧ୍ୟରେ ଗୋଟେ ଚିଲ ଝାମ୍ପମାରି ସେ ଗାଲିକଟା ଗଡ଼ିଶାରୁ ଗୋଟେ ନେଇ ଉଡ଼ିଗଲା । ଚିଲ ଗଡ଼ିଶାଟାଏ ଥଣ୍ଟରେ ଧରି ଉଡୁଥାଏ । ଗଡ଼ିଶାଟା ଜୀବନ ବିକଳରେ ଛଟପଟ ହେଉଥାଏ । ଏହିପରି ଛଟପଟ ହେବାରେ ଦୈବାତ୍ ଗଡ଼ିଶାଟା ଥଣ୍ଟରୁ ଖସିଯାଇ ତଳେ ପଡ଼ିଗଲା । ସେ ପୁଣି ଯେଉଁଠି ପଡ଼ିଲା, ସେ ଜାଗାଟା ଗୋଟେ ପୋଖରୀ । ପୋଖରୀ ପାଇବାରୁ ଗଡ଼ିଶା ଆନନ୍ଦରେ ପହଁରିଲା । ତା'ପରେ ସେ ସୁଖରେ ରହିଲା । କିଛି ଦିନ ପରେ ଜଣେ ଲୋକ ସେହି ପୋଖରୀରେ ମାଛ ଧରିବାକୁ ବନ୍‌ସି ପକାଇଲା । ତାହା ଦେଖି ସେଇ ଗଡ଼ିଶା କହିଲା –

"ସାତ ଚକଟା ପୋଢୁଅ ଘଣ୍ଟା,
ବିଭୂତି ଭୂଷଣ ଗାଲିସାକଟା,
ଚିଲ ପ୍ରସାଦରୁ ତ୍ରିଭୁବନ ଦେଖିଲି,
ତା ଆଗେ ପୁଣି ବନିସି କଣ୍ଟା ।

ଇମିତି ପାଖେରୀକୁ ପାରିବା ମୁଷ୍କିଲ ।



# ଶାଳିନେ ବନମାଳିନେ

"ନମୋ ନଳିନ ନେତ୍ରାୟ ବେଣୁ ବାଦ୍ୟ ବିନୋଦିନେ,
ରାଧାଧର ସୁଧା ପାନ ଶାଳିନେ ବନମାଳିନେ ।"

ଏହାର ଅର୍ଥ ପଦ୍ମଲୋଚନ ବେଣୁବାଦ୍ୟରସିକ ରାଧାଙ୍କର ଅଧର – ସୁଧାପାନ ଲୋଲୁପ ବନମାଳିଙ୍କୁ ପ୍ରଣାମ କରୁଅଛି ।

ଜଣେ ମୂର୍ଖ ପଣ୍ଡିତ ବୁଝାଇଲେ ଯେ, କୃଷ୍ଣ ତ ସବୁବେଳେ ବଂଶୀଟିଏ ଧରିଥା'ନ୍ତି । କ୍ଷଣେ ହେଲେ ଛାଡ଼ନ୍ତି ନାହିଁ । ରାଧା ଥରେ କୌତୁକରେ ତାଙ୍କ ହାତରୁ ବଂଶୀଟି ଛଡ଼ାଇ ନେଲେ । କୃଷ୍ଣ ଯେତେ ମାଗିଲେ ସୁଦ୍ଧା ଦେଲେ ନାହିଁ । ପଛକୁ ବହୁତ ଅନୁନୟ ବିନୟ କରି କହିଲେ –

ନମୋ ନଳି ନେ । ଅର୍ଥାତ୍ ହେ ରାଧା ମୋ ନଳି, କି ବଂଶୀ ନ ନେ, କି ନେ, ନା । ତ୍ରାୟ, କି, ମୋତେ ରକ୍ଷାକର । ତୁ ତ ପୁଣି ବେଣୁବାଦ୍ୟ ବିନୋଦିନୀ । ଏଥିରେ ସୁଦ୍ଧା ରାଧା ବଂଶୀ ଫେରାଇ ନ ଦେଇ ନିଜର ଅଧରସୁଧା ଅର୍ଥାତ୍ ପାନଖଣ୍ଡେ ନିଜର ମୁହଁରେ ଲଗାଇ ଦେଇ ସେଖଣ୍ଡ କୃଷ୍ଣଙ୍କୁ ଖୁସି କରିବାକୁ ବଢ଼ାଇଦେଇ କହିଲେ, ବନମାଳୀ ନେ । କୃଷ୍ଣ ତ ରାଗିଥିଲେ, ସେ ସେହି ରାଗରେ ସେ ପାନ ଖଣ୍ଡ ଛଡ଼ାଇ ନେଇ ରାଧାଙ୍କ ଉପରକୁ ଫିଙ୍ଗିଦେଇ କହିଲେ – ଆଲୋ, ଶାଳୀ ! ତୁ ନେ ।

ମୂର୍ଖ ପଣ୍ଡିତ ଏହା ଅର୍ଥ ନ କରି, ଆଉ କ'ଣ କରନ୍ତେ ?



# ମା ଡାହାଣୀ, ପୁଅ ମଦୁଆ

ଗୋଟିଏ ଗାଁରେ ମାଆଟିଏ ପୁଅଟିଏ ଥିଲେ । ମା ପୁଅକୁ ଭାରି ଭଲପାଏ । ପୁଅ ମଧ୍ୟ ମାଆ କଥା ମାନି ଚଳେ । ଦୁହେଁ ଖାଇପିଇ ସୁଖରେ ଚଳୁଥା'ନ୍ତି; ଖୁଡ଼୍ ଧୁଡ଼୍ କିଛି ନ ଥାଏ । ତାଙ୍କ ପଡ଼ିଶା ଘରେ ଗୋଟେ ରାଣ୍ଡ ଥିଲା । ତା'ର ପୁଅ ଝିଅ କିଛି ନ ଥିଲା; ତା'ର କାମଦାମ କିଛି ନ ଥାଏ । ପଖାଳ ପାଣି କରି ଗ୍ରାସେଟିଏ ମାରିଦେଇ ଯା କଥା ତା' ଆଗେ, ତା' କଥା ଯା ଆଗେ କହି ଖାଲି ଘର ଭାଙ୍ଗେ । ଘର ଭାଙ୍ଗିବାରେ ସେ ଏକ ମାର୍କାମରା ।

ସେ ରାଣ୍ଡୀ ଯେ ମା' ପୁଅ ସୁଖରେ ଚଳିବାର ଦେଖି ସହିପାରିଲା ନାହିଁ । କିମିତି ମା' ପୁଅ ଦୁହିଁଙ୍କର ଅପଡ଼ କରିବ, ଏଥିପାଇଁ ରାତିଦିନ ତା'ର ଚିନ୍ତା ହେଲା । ଦିନେ ଦୈବାତ୍ ପଡ଼ିଶା ପୁଅ ସାଙ୍ଗରେ ତା'ର ଦେଖାହେଲା । ଦେଖା ହେଲାକ୍ଷଣି ଆପଣାର ହୋଇ କେତେ ଦୁଃଖସୁଖ ପଚାରିଲା । ଶେଷକୁ କହିଲା – ଆରେ ପୁଅ ! ଭଲ କଥା ମନେ ପଡ଼ିଲା । ତତେ କହିବି କହିବି ବୋଲି ହଉଥିଲି, ଦେଖି ତ ପାରେ ନାହିଁ, କହିପାରି ନାହିଁ । କଥା କଅଣ କି ତୁ ପିଲା ନୋହୁଁ, ଭେଣ୍ଡା ହେଲୁଣି; କୁ ଛ'ଟା ନ'ଟା ଅଛି ଯେ, ତୋ' ଠେଇଁ କାହିଁକି ରେଣ୍ଟି କେଜାଣି । ସେ ମା', ତୁ ପୁଅ, ପରପୁଅ ନୋହୁ, ମା'ର ପୁଣି ପୁଅଠେଇଁ ଆଖି ? ଏହା ଶୁଣି ନ ଥିଲା; ସେ କଥା ମନେ ପଡ଼ିଲେ ଦିହ ଶୀତେଇ ଉଠୁଚି । ପୁଅ ହୋଇ ଖଣ୍ଡେ, ସେ ପୁଣି କଳିହା ନୁହେଁ ଦଣ୍ଡିଆ ନୁହେଁ । କୁ ମା' ଇମିତି ପୁଅକୁ କଞ୍ଚାରେ ଚୋବାଇ ଦବାକୁ ଚାହିଁବ ?

ପୁଅ କହିଲା – ଯେ ମାଉସୀ, ତୁମେ କଅଣ କହୁଛ, ମୁଁ ବୁଝିପାରୁନାହିଁ । କଅଣ କଥା, ଫିଟେଇ କହୁନାହଁ ?

ରାଣ୍ଡୀ କହିଲା – ଆରେ ପୁଅ । କଅଣ କହିବି ? ତୁ କଅଣ ତୋ ଅବସ୍ଥାରୁ ଜାଣୁ ନାହୁଁ ? ରୋଜ୍ ତ ଏଇକଥା ହେଉଛି, ଜାଣୁ ନ ଥିବୁ କିଆଁ ? ତୋର ଏତେବେଳେ ଯୁବା ବୟସ, ଦିନ ଫିଟିକି ପଡୁଥା'ନ୍ତା, ଶୁଣି ଶୁଣି ଯାଆନ୍ତା କିଆଁ । ମା'ଟା ତ ରୋଜ ରକ୍ତଗୁଡ଼ାକୁ ଶୋଷିଲା, ଦିହ କାହୁଁ ପାଇବୁ ? ତୁ ଟିକିଏ ସାବଧାନ ହଉନାହିଁ ?

ପୁଅ କହିଲା – ମାଉସୀ । ମୁଁ ତ ଏକଥା କିଛି ବୁଝିପାରୁନାହିଁ ।

ରାଣ୍ଡୀ କହିଲା – ଆରେ ତୋ'ରି ମା, ଆଉ କେହି ନୁହେଁ । ତୁ ଶୋଇ ପଡ଼ିଲେ – ତୋ ମୁହଁକୁ ମୁହଁ ଲଗାଇଦେଇ ରୋଜ୍ ରକ୍ତଗୁଡ଼ାକ ଶୋଷି ନଉଛି । ଗୋଟେ ଗୋଟେ ଡାହାଣୀ ଇମିତି ଥା'ନ୍ତି । ତୁ ଏ କଥା ଜାଣୁନାହୁଁ ?

ପୁଅ କହିଲା – କଅଣ ଗୁଡ଼ାଏ କହୁଛ ହେ ? ମୋ ମା' ଠଉଁ ବଳି ଆଉ କାହାର ମା' ଅଛି ? ସେ କାହିଁକି ଇମିତି ଗୁଡ଼େ କରିବ ?

ରାଣ୍ଡୀ କହିଲା – ହଉ, ମୋ କଥା ଏବେ ମିଛ ହେଲା; ଉଲୁଟାରେ ତୁ ତ ନିଦରେ ଶୋଇପଡୁ, ତୁ କିଆଁ ଜାଣିବୁ । ଆଚ୍ଛା, ତୁ ଦିନେ ଚେଇଁକରି ଶୋଇବୁଟି, ମା' ରକ୍ତ ଶୋଷୁଛି କିନା ଦେଖିବୁ ।

ସେ କହିଲା – ଆଚ୍ଛା, ଦିନେ ତୁମ କଥା ପରୀକ୍ଷା କରିବା ।

ସେ ରାଣ୍ଡୀ ପୁଅକୁ ଏହିପରି ମତାଇଦେଇ ତା ମା'କୁ ଦିନେ ଏକୁଟିଆ ଦେଖି କେତେ କଅଣ ଦୁଃଖସୁଖ କଥାବାର୍ତ୍ତା ହେଲା । ଶେଷକୁ କହିଲା – ଆଗୋ ? କହିବି କହିବି ବୋଲି କେତେଥର ହେଲିଣି ଗୋଟେ କଥା କହିପାରୁ ନାହିଁ ।

ସେ କହିଲା – କଥା କଅଣ, କହୁନାହଁ ?

ରାଣ୍ଡୀ କହିଲା – ଆଗୋ ତୁମ କଥା ମନେ ପଡ଼ିଲେ, ମୁଁ ଭାବେ ନ ଥିଲା ତ ଥିଲା; ଦେଇକରି ଈଶ୍ୱର ଇମିତି କାହିଁକି କରନ୍ତି କେଜାଣି । ପୁଅ ହୋଇ ଖଣ୍ଡେ, ପିଲାଦିନୁ ବାପ ମଲେ । ପାଠଶାଠ ତ ପଢ଼ିଲା ନାହିଁ ।

ହଉ ନ ପଢ଼ିଲା ତ ନାହିଁ, ସମସ୍ତେ କଅଣ ପାଠ ପଢୁଛନ୍ତି ? ପାଠ ନ ହେଲା ଯେ ଇମିତି ଖରାପ ଅଭ୍ୟାସଟିଏ କାହିଁକି କରିଛି ?

ମା' କହିଲା – ମୋରି ପୁଅ କଥା କହୁଛଟିକି ? କାହିଁ ତା'ର ତ ଖରାପ ଗୁଣ କିଛିନାହିଁ ।

ରାଣ୍ଡୀ କହିଲା – ହୟେ, ଖରାପ ଗୁଣ କିଛି ନାହିଁ ? ମଦ ତ ଖାଇଲା; ଯାଠଉଁ ବଳି ଖରାପ ଗୁଣ କଅଣ ହୁଅନ୍ତା ?

ମା' କହିଲା – କ'ଣ ? ମୋ ପୁଅ ମଦ ଖାଏ ? ହୟେ କଞ୍ଚା ମିଛଗୁଡ଼େ କିମିତି କହୁଛ ?

ରାଣ୍ଡୀ କହିଲା – ହଉ, ଏବେ ମୋ କଥା ମିଛ ହେଲା । ଆଜ୍ଞା, ତୁମେ ଦିନେ ପୁଅ ଶୋଇଲା ଉତ୍ତାରୁ ତା' ମୁହଁ ଶୁଂଘିବଟି, ମଦଟା କଅଣ ଲୁଚିବ ? ଭଣ୍‌କିନା ତ ପାଟିଟା ଗନ୍ଧେଇବ, ସେଇଥିରୁ ବୁଝିବ ମୋ କଥା ସତ, କି ମିଛ ।

ମା' ଏକଥା ଶୁଣି ସେଦିନ ରାତିରେ ପୁଅ ଶୋଇଲା ଉତ୍ତାରୁ ତା' ମୁହଁ ପାଖରେ ମୁହଁ ଲଗେଇ ଦେଇ ବାସନା ବାରି ବସିଲା । ଥରକୁ ଥର ମୁହଁ ଲଗାଉଥାଏ, ପୁଣି କାଢ଼ି ଆଣୁଥାଏ । ବାସନା ଫାସନା, କିଛି ପାଇଲା ନାହିଁ ।

ସେଦିନ ପୁଣି ପୁଅ ପଡ଼ିଶାଘର ରାଣ୍ଡୀ କଥାରେ ମା'କୁ ପରୀକ୍ଷା କରିବ ବୋଲି ନ ଶୋଇ ଗାଲିପଡ଼ିଥାଏ । ମା' ଏପରି ଥରକୁ ଥର ମୁହଁରେ ମୁହଁ ଲଗାଇବା ମଧ୍ୟ ଅନୁଭବ କଲା । ସେଇଥିରୁ ସେ ବୁଝିଲା – ପଡ଼ିଶା ମାଉସୀ ଯାହା କହିଥିଲା; ସତ ତ, ପ୍ରକୃତରେ ଏ ଡାହାଣୀ ନିତି ନିତି ମୋ ଦେହରୁ ରକ୍ତ ଶୋଷୁଛି । ଏପରି ବିଶ୍ୱାସ ହବାରେ ସେ ଶୋଇବ କଅଣ, ଧଡ଼କିନା ଉଠି ମା' ଉପରେ କଲା ହଗାଲଗା ମାଡ଼ । ମା' ମାଡ଼ରେ କଲବଲ ହୋଇ ରାଗରେ ଅଭାଷା ଦୁର୍ଭାଷା କରି ଗୁଡ଼ାଏ ଗାଳିଦେଲା । ଗାଁ'ଲୋକେ ଏ ଗୋଳମାଳ ଶୁଣି ଦୌଡ଼ିଆସି ଦେଖନ୍ତି ତ ମା' ଉପରେ ମାଡ଼ ହଉଛି । ଲୋକେ ପଚାରିଲେ – କିରେ ମା'ଟାକୁ କାହିଁକି ମାରୁଛୁ ?

ପୁଅ କହିଲା – ଆହେ । ମା' କୁଠେଇଁ ପୁଅର ରକ୍ତ ଶୋଷେ ? ଏ ଡାହାଣୀ ରୋଜ୍ ମୋ ରକ୍ତ ଶୋଷୁଛି । ଲୋକେ ଏହା ଶୁଣି ଯେ ଯେତେ ବୁଝାଇଲେ ସେ ବୁଝିଲା ନାହିଁ । ସେ କହିଲା – ମୁଁ ତ ନିଜ ଆଖିରେ ଦେଖିଲି, ଆଉ କାହା କଥା କଅଣ ?

ଏ ଘଟଣା କଅଣ ବୋଲି ମାଆକୁ ପଚାରିବାରେ, ମା' କହିଲା – କଥା କିଛି ନୁହେଁ । ମୋ ପଡ଼ିଶା ନାନୀ ମୋତେ କହିଲା – ତୋ ପୁଅଟା ମଦ ଖାଏ । ମୁଁ ବିଶ୍ୱାସ ନ କରିବାରୁ ମତେ କହିଲା – ସେ ଶୋଇଲାବେଳେ ତା' ମୁହଁ ଶୁଂଘି ଦେଖୁ ନାହୁଁ ?

ପୁଅକୁ ପଚାରିବାରୁ ପୁଅ କହିଲା – ମତେ ସେଇ ପଡ଼ିଶା ନାନୀ କହିଲା – ତୋ ମା'ଟା ଡାହାଣୀ । ସେ ସବୁଦିନ ତୁ ଶୋଇଲାବେଳେ ତୋ ମୁହଁକୁ ମୁହଁ ଲଗାଇ ତୋ ରକ୍ତଯାକ ଶୋଷି ନେଉଛି । ମୁଁ ବିଶ୍ୱାସ ନ କରିବାରୁ ମୋତେ ପରୀକ୍ଷା କରିବାକୁ କହିଲା । ସେଥିପାଇଁ ମୁଁ ନ ଶୋଇ ପରୀକ୍ଷା କରୁଥିଲି । ମୁଁ କିଆଁ ଜାଣିବି – ମା' ତା କଥାରେ ପଡ଼ି ମୋ ମଦ ଖିଆ ପରଖୁଛି ବୋଲି ?

ଭଦ୍ରଲୋକେ କହିଲେ – ଏବେ ବୁଝିଲ ତ ? ତୁ ମଦୁଆ ନୋହୁଁ କି ତୋ ମା' ଡାହାଣୀ ନୁହେଁ ? ସେ ଘରଭଙ୍ଗେଇ ରାଣ୍ଡୀ ଏ ପାଲା ଲଗେଇଦେଲା । ମା' ପୁଅ ସବୁ କଥା ବୁଝିଲେ, ତୁନିତାନ୍ ହୋଇ ରହିଲେ ।

ଗାଁ' ଲୋକେ ତହିଁ ଆରଦିନ ସେ ଘରଭଙ୍ଗେଇ ରାଣ୍ଡୀର ଏହିପରି ବହୁତ କାମ ଦେଖି ତାଙ୍କୁ ଟାଙ୍କେ ଛେଚି ଗାଁ'ରୁ ବାହାର କରିଦେଲେ । ସେତିକିରେ ଗାଁ' ଥଣ୍ଡା ।

ଯାକୁ କହନ୍ତି – 'ଯେସାକୁ ତେସା' ।



# କାଖ ଟେକି ଟେକି ନାଚରେ ବାବା

ଗୋଟିଏ ମଠରେ ଜଣେ ମହନ୍ତ ଥିଲେ । ଏଣୁତେଣୁ ଆଉ କେତେଗୁଡ଼ିଏ ବାବାଜି ମଧ୍ୟ ସେ ମଠରେ ଜୁଟିଥିଲେ । ସବୁଦିନ କୀର୍ତ୍ତନ ପରେ ସମସ୍ତଙ୍କର ଏକାଠେଇଁ ପଙ୍ଗତ ହୁଏ । ଏହିପରି କେତେଦିନ ଗଲା ।

ମହନ୍ତଙ୍କର ଗୋଟିଏ ବେକମାଳି ଏବଂ କରମାଳି ଥିଲା । ମହନ୍ତ ଜପ ତପ ସାରି ସେ ମାଳି ଦୁଇଟିକୁ ଠାକୁରଙ୍କ ଗାଦି ଉପରେ ରଖିଦିଅନ୍ତି । ଦିନେ ଦେଖିଲା ବେଳକୁ ମାଳି ଦିଓଟି ନାହିଁ । ଖୋଜାଲୋଡ଼ା, ପଚରା ଉଚରା ବହୁତ ହେଲା; ମାତ୍ର ମାଳି ମିଳିଲା ନାହିଁ । ମହନ୍ତଙ୍କ ମନ ବଡ଼ ଖରାପ ହେଲା । ସେ ଦେଖିଲେ ଯେ ମାଳି ଦୁଇଟା ଏହିକ୍ଷଣି ଥିଲା; ଚାହୁଁ ଚାହୁଁ କୁଆଡ଼େ ହରଣଚାଳ ହୋଇଗଲା ? ଆଉ କିଏ ନେବ ? ନିଶ୍ଚେ ଏ ବାବାଜିଙ୍କ ଭିତରୁ କିଏ ନେଇଛି । କେହି କୁଆଡ଼େ ତ ଯାଇନାହାନ୍ତି । ପରୀକ୍ଷା କରିଦେଲେ ଧରାପଡ଼ିଯିବ, ଯିବ କୁଆଡ଼େ ? ଏହା ବିଚାରି ଗୋଟେ କୀର୍ତ୍ତନ ଆରମ୍ଭ କରିଦେଲେ । କୀର୍ତ୍ତନରେ ସବୁ ବାବାଜି ଯୋଗଦେଲେ । କୀର୍ତ୍ତନ ଯୋରସୋରରେ ଚାଲିଲା । ମହନ୍ତ ଭକ୍ତିରେ ଭୋଳ ହୋଇ ନାଚିଲେ । ମହନ୍ତଙ୍କୁ ନାଚିବାର ଦେଖି ସବୁ ବାବାଜି ନାଚିଲେ । ନାଚରେ ସମସ୍ତଙ୍କୁ ଭୋଳ ହେବାର ଦେଖି ମହନ୍ତ କୀର୍ତ୍ତନ ସ୍ୱରରେ କହିଲେ –

"କାଖ ଟେକି ଟେକି ନାଚରେ ବାବା ।"

ମହନ୍ତଙ୍କ କଥାରେ ସମସ୍ତେ କାଖ ଟେକି ନାଚିଲେ; ମାତ୍ର ଚୋର ବାବାଜି ଆଉ କାଖ ଟେକିଲେ ନାହିଁ । କିମିତି ବା କାଖ ଟେକିବେ ? କାଖ ଟେକିଲେ ତ ମାଳି ଧରାପଡ଼ିଯିବ । ନ ଟେକିବ ବା କେମିତି ? ନ ଟେକିଲେ ତ ସମସ୍ତଙ୍କର ସନ୍ଦେହ ହେବ । ସୁତରାଂ ସେ ଗୋଟେ ହାତ ଟେକି କହିଲା –

"ଯାହାକୁ ଯେମିତି ଆସେରେ ବାବା ।"

ସେ ଏତକ ଯେମିତି କହିଛି, ମହନ୍ତ ଦେଖନ୍ତି ତ ସମସ୍ତେ ଦି' କାଖ ଟେକିଛନ୍ତି; ସେଇ ଏକା ଗୋଟେ କାଖ ଟେକିଛି । ଆଉ ଜାଣିବାକୁ ବାକି ରହିଲା ନାହିଁ । ସାଙ୍ଗେ ସାଙ୍ଗେ ତଲାସ ହେବାରେ କାଖ ସନ୍ଧିରୁ ମାଳି ମିଳିଗଲା । ଏତିକିରେ କୀର୍ତ୍ତନ ବନ୍ଦ କରି ତା' ଉପରେ କୀର୍ତ୍ତନ ଆରମ୍ଭ କରିଦେଲେ । ବିଚରା ସେତିକିରେ କଲବଲ ହୋଇ ପ୍ରାଣ ଘେନି ଭାଗା ।

କର୍ମଫଳ ଯାଆନ୍ତା କୁଆଡ଼େ ?



# ଖୋଦା ଏତ୍‌ନା ବଖତ୍ କ୍ୟା କରତେ ହେଁ ?

ଜଣେ ବାଦ୍‌ଶାହା ଥିଲେ । ବାଦ୍‌ଶାହାମାନେ ଅନେକ ସମୟରେ ଖିଆଲବାଜ୍ । ଦିନେ ତାଙ୍କର କ'ଣ ଖିଆଲ ହେଲା, କେଜାଣି, ଉଜୀରକୁ ଡାକି ପଚାରିଲେ – ଉଜୀର । ଖୋଦା ଏତ୍‌ନା ବଖତ୍ କ୍ୟା କର୍‌ତେ ହେଁ ?

ଉଜୀର କହିଲେ – ମୁଁ ଏହା କିପରି କହିବି ? ଖୋଦା କିପରି, ସେ କେଉଁଠି ଅଛନ୍ତି, କଅଣ କରନ୍ତି, ମୋତେ ଜଣାନାହିଁ । ଲୋକେ କହନ୍ତି – ଖୋଦା ବୋଲି କେହି ଅଛନ୍ତି; କିନ୍ତୁ ତାଙ୍କୁ କେହି ଦେଖି ନାହାନ୍ତି । ଦେଖିଥିଲେ ଦେଖିଥିବେ ଯୋଗୀ, ଫକୀର । ତାଙ୍କୁ ପଚରାଗଲେ ସେ ଅବା କହିପାରିବେ ? ମୁଁ ହଜୁରଙ୍କ ଦାନାପାଣି ଖାଏ, ହୁକୁମ୍ ତାମିଲ କରେ । ମିଛ କହିପାରିବି ନାହିଁ ।

ବାଦ୍‌ଶାହା ସେଥିରେ ସନ୍ତୁଷ୍ଟ ନ ହୋଇ କହିଲେ – ଏପରି ଫାଙ୍କିଦେଲେ ହେବନାହିଁ । ତୁମ୍ଭେ ଉଜୀର, ଏହା ଯେବେ ନ କହିପାରିବ, ତେବେ ଉଜୀର କାହିଁକି ହେବ । ସାତ ଦିନ ମଧ୍ୟରେ ତୁମ୍ଭକୁ ଅଲବତ୍ ଏହାର ଜବାବ୍ ଦେବାକୁ ହେବ । ନ ହେଲେ ତୁମ୍ଭଙ୍କୁ, ତୁମ୍ଭ ପରିବାରକୁ ଫାଶି ଦଣ୍ଡ ଦିଆଯିବ ।

ଉଜୀର ଆଉ କିଛି ନ କହି ଦୀର୍ଘନିଶ୍ୱାସ ପକାଇ ମନ ଦୁଃଖରେ ଘରକୁ ଫେରିଲେ । ମନରେ ସୁଖ ନ ଥାଏ । ବଡ଼ ଭାଳେଣିରେ ପଡ଼ିଲେ । ବଡ଼ ମୁସ୍କିଲ କଥା । ବାଦଶାହାଙ୍କର ପ୍ରଶ୍ନର ଉତ୍ତର କେହି ତ ଦେଇପାରିବେ ନାହିଁ, ଉଜୀର ଅବା କିପରି ଜାଣିବେ ? ନ ହେଲେ ତ ବଂଶବର୍ଗ ଫାଶି ପାଇବେ । ଏଇ ଚିନ୍ତାରେ ପଡ଼ି ଉଜୀର ଭୋକ ଶୋଷ ସବୁ ଭୁଲିଗଲେ । ନ ଖାଇ ନ ପିଇ ଦୁଃଖରେ ମୁହଁମାଡ଼ି ଶୋଇଲେ । ଏହା

ଦେଖି ତାଙ୍କର ପୁଅ, ଝିଅ, ମା, ସ୍ତ୍ରୀ ସମସ୍ତେ କାରଣ ପଚାରିଲେ । ଉଜୀର ସମସ୍ତଙ୍କୁ ସବୁ ଘଟଣା ଜଣାଇଦେଲେ । ଏହାଶୁଣି ଘରର ସମସ୍ତେ ମୁଣ୍ଡରେ ହାତ ଦେଲେ । କାହାର ମନରେ ସୁଖ ରହିଲା ନାହିଁ । ସମସ୍ତେ ଯେଝା ସୂତ୍ରେ ପାଖପଡ଼ିଶା, ଯୋଗୀ ଫକୀର ଯାହାକୁ ପାଇଲେ, ସମସ୍ତଙ୍କୁ ସେଇ କଥା ପଚାରିଲେ । କେହି କିଛି କହିପାରିଲେ ନାହିଁ । ଏକଥା ଚାରିଆଡ଼େ ଖେଳିଗଲା । ଗୋଟେ ଛେଳି ଜଗା ପିଲା ଏ କଥା କିମିତି ଶୁଣି ପାରିଲା । ସେ ଗୋଠରୁ ଫେରି ଉଜୀରଙ୍କ ପାଖେ ପହଞ୍ଚି କହିଲା– ହଜୁର ! ଆପଣ ଖା'ପିଅ କରନ୍ତୁ, କିଛି ଭୟ ନାହିଁ । ମୁଁ ବାଦଶାହାଙ୍କ କଥାର ଉତ୍ତର ଦେବି ।

ଉଜୀର ଦେଖିଲେ – କେଡ଼େ କେଡ଼େ ଲୋକ ଆଁ କରି ଦେଉଛନ୍ତି, ଏ ଛେଳିଜଗା ପିଲାଟା କ'ଣ କହିବ । ତା' କଥାରେ ତାଙ୍କର ଟିକିଏ ହେଲେ ବିଶ୍ୱାସ ହେଲାନାହିଁ । ସେ ଟୋକା ପୁଣି କହିଲା – ଆପଣ ମୋ କଥାରେ ବିଶ୍ୱାସ କରି ଖାଆନ୍ତୁ; ମୁଁ ନିଶ୍ଚୟ ଉତ୍ତର ଦେବି ।

ଉଜୀର ଭାବିଲେ – ଏହା କଥାରେ ତ ବିଶ୍ୱାସ ହେଉନାହିଁ । ତେବେ ଏତେ ଲୋକଙ୍କୁ ପଚରାଗଲା, କେହି ଜଣେ ତ ଏପରି ସାହସ ଦେଲା ନାହିଁ । ଏ ଟୋକା ପାରୁ ନ ପାରୁ ସାହସ ତ କରିଛି । ୟା କଥାରେ ବିଶ୍ୱାସ କରି ଖାଇଲେ କ୍ଷତି କଅଣ ? ନ ହେଲେ ଓପାସରେ ପ୍ରାଣ ହରାଇବାକୁ ହେବ । ପୁଣି ପ୍ରକୃତ ଉତ୍ତର ଦେଇ ନ ପାରିଲେ ତ ମରିବାକୁ ହେବ । ତେବେ ୟା କଥା ମାନିନେଲେ କ୍ଷତି କଅଣ ? ଏହା ଭାବି ଖିଆପିଆ କଲେ; କିନ୍ତୁ ମନରେ ସୁଖ ନ ଥାଏ । ଦେଖୁ ଦେଖୁ ଛଅ ଦିନ ଚାଲିଗଲା । ତା' ଆରଦିନ ଉତ୍ତର ନ ଦେଲେ ଆଉ ରକ୍ଷା ନାହିଁ । ଶେଷଦିନ ଉଜୀର ସେ ଛେଳିଆ ଟୋକାକୁ ଡାକି କହିଲେ – କିରେ, ଆଜି ତ ଶେଷ ଦିନ କ'ଣ କହିବୁ ପରା କହ । ସେ କହିଲା – ମୁଁ ଆପଣଙ୍କୁ କାହିଁକି କହିବି ? ମୁଁ ଖୋଦ୍ ବାଦ୍‌ଶାହାଙ୍କୁ କହିବି ।

ଉଜୀର କହିଲେ – ହଉ ତେବେ, ମୋ ସାଙ୍ଗେ ବାଦଶାହାଙ୍କ ପାଖକୁ ଚାଲ ।

ସେ କହିଲା ମୁଁ ଯିବି ଯେ, କ'ଣ ଇମିତି ଯିବି ? ସେ ଆଉ କିଏ ନୁହଁନ୍ତି, ବାଦଶାହା, ମୁଁ ପୁଣି କହିବି ଖୋଦାଙ୍କ କଥା । ଏପରି ବେଶରେ କେମିତି ଯିବି ?

ଉଜୀର କହିଲେ – ତେବେ ତୋର କ'ଣ ଦରକାର, କହ ।

ସେ କହିଲା – ବାଦଶାହାଙ୍କୁ ଆପଣ କହନ୍ତୁ – ସେ ମୋ ପାଇଁ ପିନ୍ଧିବାକୁ ପାଟ, ଯିବାକୁ ହାତୀ ପଠାନ୍ତୁ । ତେବେ ଯିବି ।

ଉଜୀର ଦେଖିଲେ – ଯେ ବଡ଼ ମୁସ୍କିଲ କଥା । ବାଦଶାହା ଏ ଛାର ଛେଳିଆ ଟୋକା ପାଇଁ ଏ ସବୁ ପଠାଇବେ, ନା, ଯେ ଯିବ । ଏକଥା ହେଲାପରି ଦିଶୁନାହିଁ । ଆଚ୍ଛା ଯାଏ; କଅଣ ହେଉଛି ଦେଖାଯାଉ । ସେ ବାଦଶାହାଙ୍କ ପାଖକୁ ଯାଇ ଜଣାଇଲେ ହଜୁର ରାଜ୍ୟଯାକ କେହି ହଜୁରଙ୍କ ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ । ଗୋଟିଏ ଛେଳିଆ ଟୋକା ଉତ୍ତର ଦେବାକୁ ଜବାବ୍ ଦେଇଛି । ସେ କହେ – ମୁଁ ଯେବେ ଖୋଦାଙ୍କ କଥା କହିବି, ତେବେ ଏପରି ବେଶରେ, ଏପରି ଅବସ୍ଥାରେ ଯିବି ନାହିଁ। ମୋ ପାଇଁ ପିନ୍ଧିବାକୁ ପାଟ, ଯିବାକୁ ହାତୀ ଆସିଲେ, ମୁଁ ଯାଇ ବାଦଶାହାଙ୍କ ଆଗରେ ଖୋଦାଙ୍କ କଥା କହିବି ।

ବାଦଶାହା ତ ଖିଆଲବାଜ ଲୋକ । ସେ ଏହା ଶୁଣି ସାଙ୍ଗେ ସାଙ୍ଗେ ସବୁ ବରାଦ କରିଦେଲେ । ଛେଳିଆ ଟୋକା ପାଟପତନୀ ପିନ୍ଧି ହାତୀରେ ବସି ବାଦଶାହାଙ୍କ ପାଖରେ ପହଞ୍ଚିଲା । ବାଦଶାହା ସିଂହାସନରେ ବସି ପଚାରିଲେ – "ଖୋଦା ଏତନା ବଖତ୍ କ୍ୟା କର୍‌ତେ ହେଁ" ତୁ କହିପାରିବୁ ? ସେ କହିଲା – ହଜୁର । ତା କହିପାରିବି ବୋଲି ତ ଆସିଛି । ବାଦଶାହା କହିଲେ – ତେବେ କହ ।

ସେ କହିଲା – ହଜୁର । ଯେ କଥା ତୁମ ଆମ କଥା ନୁହେଁ, ଖୋଦ୍ ଖୋଦାଙ୍କ କଥା । ମୁଁ ଯେତେବେଳେ ଖୋଦାଙ୍କ କଥା କହିବି, ତଳେ ଠିଆହୋଇ କହିବି, ହଜୁର ଉପରେ ବସି ଶୁଣିବେ – ଏକଥା ହଜୁରଙ୍କୁ ପସନ୍ଦ ଲାଗୁଛି ? ବାଦଶାହା କହିଲେ ତେବେ ତୁ ଉପରକୁ ଆ, ମୁଁ ତଳକୁ ଯାଉଛି । ବାଦଶାହା ତଳକୁ ଆସିବାରେ ଛେଳିଆ ଟୋକା ସିଂହାସନରେ

ବସି କହିଲା – ତେବେ ହାତଯୋଡ଼ି ଠିଆ ହୁଅନ୍ତୁ । ବାଦଶାହା ହାତ ଯୋଡ଼ି ଠିଆହେଲେ । ଛେଳିଆ ଟୋକାର କଥା ଶୁଣିବାକୁ ହଜାର ହଜାର ଲୋକ ଜମା ହୋଇଥା'ନ୍ତି । ସେ କହିଲା, ଏଥର ହଜୁର ଯାହା ପଚାରିବାର ପଚାରନ୍ତୁ ।

ବାଦଶାହା ପୁଣି କହିଲେ – ଖୋଦା ଏତ୍‌ନା ବଖତ୍ କ୍ୟା କରତେ ହେଁ ।

ଛେଳିଆ ଟୋକା କହିଲା – "ଖୋଦା ଏତ୍‌ନା ବଖତ୍ ସାନକୁ ବଡ଼, ବଡ଼କୁ ସାନ କରୁଛନ୍ତି । ନ ହେଲେ ହଜୁର କାହିଁକି ହାତଯୋଡ଼ି ତଳେ ଠିଆ ହୋଇଥା'ନ୍ତେ, ମୋ ଭଳି ଛେଳିଜଗା ପିଲା ରତ୍ନ ସିଂହାସନରେ ବସିଥା'ନ୍ତା ।"

ଏହା ଶୁଣି ସମସ୍ତେ ଏକ ସ୍ୱରରେ କହିଲେ, ଏକଥା ସତ, ଏଥିରେ ଟିକିଏ ସୁଦ୍ଧା ସନ୍ଦେହ ନାହିଁ ।

ବାଦଶାହା ମଧ୍ୟ ଖୁସିହୋଇ କହିଲେ – ଉତ୍ତର ଠିକ୍ ଏଥିରେ ସନ୍ଦେହ ନାହିଁ ।

ବାଦଶାହା ପ୍ରସନ୍ନ ହୋଇଗଲେ । ଉଜୀର ବିପଦରୁ ଉଦ୍ଧାର ପାଇଲେ । ଛେଳିଆଟୋକା ବାଦ୍‌ଶାହାଙ୍କ ଅନୁଗ୍ରହରୁ ମହାସୁଖରେ ରହିଲା ।



# ଇସିମେ ଚିଡ଼ିଆ ହେ

ଦିନେ କଲିକତାରେ ଜଣେ ପଠାଣ ଯାଉ ଯାଉ ତାକୁ ରାସ୍ତାରେ ଝାଡ଼ା ତଲବ ହେଲା । ଅତର୍ଚ୍ଛ ଝାଡ଼ା ସମ୍ଭାଳି ହେଲା ନାହିଁ। ସେ ଏଣିକି ତେଣିକି ଚାହିଁ ସେହି ରାସ୍ତା ଉପରେ ଝାଡ଼ା ବସିଗଲା । କାମ ସାରି ଉଠିଲା ବେଳକୁ ଦେଖିଲା ଜଣେ କନେଷ୍ଟବଲ ତା'ରି ଆଡ଼କୁ ଆସୁଛି । ପଠାଣ ପାଞ୍ଚଆଇନ ଭୟରେ ଆଉ କିଛି ଉପାୟ ନ ପାଇ ମୁଣ୍ଡରୁ ଟୋପିଟି କାଢ଼ି ସେ ମଇଳା ଉପରେ ଘୋଡ଼ାଇ ଦେଲା । ପଠାଣ ଯାଇ ନାହିଁ, ଠିଆ ହୋଇଛି । ଏତିକିବେଳେ କନେଷ୍ଟବଲ ପହଞ୍ଚି ଦେଖିଲା – ଟୋପିଟା ତଳେ ଥୁଆ ହୋଇଛି । ଟୋପି ମୁଣ୍ଡରେ ନ ପିନ୍ଧି ତଳେ ଥୁଆ ହେବାର ଦେଖି ସେ ପଚାରିଲା – ଏ କ୍ୟା ହେ । ପଠାଣ ସାଙ୍ଗେ ସାଙ୍ଗେ ଜବାବ ଦେଲା – ଇସମେ ଚିଡ଼ିଆ ହେ ।

କନେଷ୍ଟବଲ ବଡ଼ ଚିଡ଼ିଆସଉକା । ସେ ଟୋପିତଳେ ଚିଡ଼ିଆ ଥିବାର ଶୁଣି ଧୀରେଧୀରେ ଟୋପି ପାଖକୁ ଗଲା । ଟୋପିଟା ଭୁଷ୍‌କିନା ଉଠାଇଦେଲେ ଚିଡ଼ିଆ ଉଡ଼ିଯିବ ଭାବି; ଆସ୍ତେ ଆସ୍ତେ ଟୋପିର ଗୋଟିଏ ପାଖ ଟେକି ତା' ଭିତରେ ଧୀରେ ଧୀରେ ଡାହାଣହାତ ଭର୍ତ୍ତି କଲା । ସେ ଏହିପରି କରୁ କରୁ ପଠାଣ ଚମ୍ପଟ କଲା । କନେଷ୍ଟବଲର ତ ଚିଡ଼ିଆରେ ମନ ଲାଗିଛି, ସେଇହେତୁ ପଠାଣ ଖସିଯିବା କଥା ସେ ଜାଣିପାରିଲା ନାହିଁ । ତା'ର ଆଙ୍ଗୁଠି ଯେତେବେଳେ ମଇଳାରେ ଲାଗିଲା, ସେତେବେଳେ ତାହା ନରମ ଲାଗିଲା । ସେ ଭାବିଲା – ପକ୍ଷୀଙ୍କର ପରଗୁଡ଼ାକ ତ ନରମ, ସେହି

ପର ବୋଧହୁଏ ହାତରେ ଲାଗିଲା । ଏଥିରେ ଟୋପିତଳେ ଚିଢ଼ିଆ ଥିବା ବିଷୟରେ ତା'ର ଆଉ ସନ୍ଦେହ ରହିଲା ନାହିଁ । ତା'ପରେ ସେ ହାତକୁ ଆହୁରି ଭିତରକୁ ପୂରାଇ ଗାବୁକିନା ମାଡ଼ି ବସିବାରେ ହାତଯାକ ମଇଳା ବଲବଲ ହୋଇଗଲା । ଟୋପି ଉଠାଇ ଦେଖେ ତ ଚିଢ଼ିଆ ନା ଫିଢ଼ିଆ, ଗୋଟିଏ ମଇଳା ଗଦା । ଏଣେ ହାତ ମଇଳା ବଲବଲ । ବିଚରା ଯାଏ କୁଆଡ଼େ ? ରାଗରେ ପଠାଣକୁ ଚାହିଁଲା ବେଳକୁ ପଠାଣ ଫଟାଣ କେହି ନାହାନ୍ତି । ଆଉ କଅଣ କରିବ ? ଗୁଡ଼ାଏ ବିଜାଡ଼ ହୋଇ ପାଣି କଳକୁ ଦଉଡ଼ିଲା ।

ଏ ଚିଢ଼ିଆଧରା ସେ ଆଉ ଭୁଲିବ ନାହିଁ ।



# ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍

ଜଣେ ବ୍ରାହ୍ମଣଙ୍କୁ ପ୍ରଥମ ସାମ୍ବତ୍ସରିକ ପିତୃଶ୍ରାଦ୍ଧ କରିବାକୁ ହେଲା । ସେ କେବେ ଶ୍ରାଦ୍ଧ କରୁ ନ ଥିଲେ । ଶ୍ରାଦ୍ଧ ବତେଇ ଦେବାକୁ ପୁରୋହିତଟିଏ ମଧ୍ୟ ପାଇଲେ ନାହିଁ । ତେଣୁ ପୋଥି ଧରି ଶ୍ରାଦ୍ଧ କରିବାକୁ ହେଲା । ଶ୍ରାଦ୍ଧ ମଧ୍ୟରେ ପିଣ୍ଡ ପଡ଼ିଲା ପରେ ପିଣ୍ଡ ଉପରେ ବସ୍ତ୍ରଦାନ କରିବାର ବିଧି ଅଛି । ବସ୍ତ୍ର ଅଭାବରେ ସୂତ୍ର ମଧ୍ୟ ଦିଆଯାଇପାରେ । ଏହି କଥା ପ୍ରତ୍ୟେକ ଶ୍ରାଦ୍ଧପୋଥିରେ ସଂସ୍କୃତରେ 'ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍' ବୋଲି ଲେଖାଥାଏ; କିନ୍ତୁ ଏହି ନୂତନ ଶ୍ରାଦ୍ଧକର୍ତ୍ତାଙ୍କ ଶ୍ରାଦ୍ଧ ଖେଦାରେ 'ସୂତ୍ରଂ ଦଦ୍ୟାତ୍' ନ ହୋଇ 'ମୂତ୍ରଂ ଦଦ୍ୟାତ୍' ବୋଲି ଲେଖାଥିଲା । ଲେଖକ ଲେଖୁ ଲେଖୁ 'ସ'ର ତଳ ଗାରଟି ଦୈବାତ୍ ଛାଡ଼ିଯାଇଥିଲେ । ଶ୍ରାଦ୍ଧକର୍ତ୍ତା ମୂତ୍ରଂ ଦଦ୍ୟାତ ପଢ଼ି ସନ୍ଦେହରେ ପଡ଼ିଲେ ? ସନ୍ଦେହ ହେବାରୁ ବୋଉକୁ ଡାକି ପଚାରିଲେ – ହଇଲୋ ବୋଉ । ପୋଥିରେ କ'ଣ ଲେଖିଛି – ପିଣ୍ଡୋପରି ମୂତ୍ରଂ ଦଦ୍ୟାତ୍ । ତେବେ କଅଣ ପିଣ୍ଡ ଉପରେ ମୂତିବାକୁ ହେବ ? ବୋଉ ତ ମହାପଣ୍ଡିତ, ସେ ବା କଅଣ କହିବ ? ପୁଅ ତ ପଚାରୁଛି, ନ କହିବ କିମିତି ? ଶ୍ରାଦ୍ଧରେ ଠାଏ ପଢ଼େ – ନାବୀ ବିଶ୍ରଂସନଂ ଦୃଢଂ କୃତ୍ୱା । ତେତେବେଳେ ଶ୍ରାଦ୍ଧକର୍ତ୍ତା କୁଶଟେ ଖୋଷଣିରେ ଖୋଷନ୍ତି । ବୋଉ ଏହା ଦେଖିଥିଲା । ସେ ତା'ରି ଉପରେ ନିର୍ଭର କରି କହିଲା – ହଁ, ହଁ, ନନା ତ କଅଣ କଚ୍ଛା ଫିଟାନ୍ତି । ପୁଅ ଏତକ ଯହୁଁ ସୂଚନା ପାଇଲା, ତହୁଁ ଆଉ ସନ୍ଦେହ ନ କରି ପିଣ୍ଡ ଉପରେ ମୂତ୍ରଧାର ଦେଇ ବିଧିରକ୍ଷା କଲା ।

ଅଯୋଗ୍ୟ ପୁତ୍ର ଆଉ କ'ଣ କରନ୍ତା ?



